# ଶ୍ରୀଶ୍ରୀ ସାରଦା ଦେବୀଙ୍କ

## ଜୀବନ-ଚରିତ



ସ୍ୱାମୀ ଜଗନ୍ନାଥାନନ୍ଦ




ପ୍ରଥମ ସଂସ୍କରଣ
୧୯୫୨

ଏକଟଙ୍କା ଦୁଇଅଣା

ମୂଲ୍ୟ ୧।

# ପ୍ରସ୍ତାବନା

ଶ୍ରୀ ଶ୍ରୀ ସାରଦା ଦେବୀଙ୍କ ଜୀବନ-ଚରିତ ଉତ୍କଳ ଭାଷାରେ ଏହି ପ୍ରଥମବାର ପ୍ରକାଶିତ ହେଲା । ବଙ୍ଗଳା ଭାଷାରେ 'ଶ୍ରୀ ଶ୍ରୀ ସାରଦା ଦେବୀ' ଓ 'ଶ୍ରୀ ଶ୍ରୀ ମାୟେର କଥା' ପ୍ରଭୃତି ଗ୍ରନ୍ଥରେ ତାହାଙ୍କ ଜୀବନୀ ଓ ଉପଦେଶ ବିଶଦ ଭାବରେ ବର୍ଣ୍ଣିତ । ସେହି ପୁସ୍ତକ ଅବଲମ୍ବନରେ ଏହା ପ୍ରଣୀତ । ତା' ଛଡ଼ା ଶ୍ରୀମ ('ଶ୍ରୀ ଶ୍ରୀ ରାମକୃଷ୍ଣ କଥାମୃତ' ପ୍ରଣେତା ମାଷ୍ଟର ମହାଶୟ) ଙ୍କ ମୁଖରୁ ଯାହା ଶୁଣିଥିଲି ତାହା ମଧ୍ୟ ଏଥିରେ ସନ୍ନିବେଶିତ ।

ଶ୍ରୀ ଶ୍ରୀ ସାରଦା ଦେବୀଙ୍କ ତପୋମୟ ଜୀବନ, ଧର୍ମପ୍ରାଣତା, କର୍ମକୁଶଳତା, ପତିପରାୟଣତା, କର୍ତ୍ତବ୍ୟନିଷ୍ଠା ବାସ୍ତବିକ ଅତୁଳନୀୟ । ସର୍ବୋପରି ସେ ତ୍ୟାଗ, ସଂଯମ, କରୁଣା ଓ ସେବାର ପ୍ରତିମୂର୍ତ୍ତି ଥିଲେ । ଏହି ମହୀୟସୀ ନାରୀଙ୍କ ସରଳ ଓ ନିରାଡ଼ମ୍ବର ଅଥଚ ଗଭୀର ଉଦାରଭାବସମୃଦ୍ଧ ଜୀବନରୁ ନରନାରୀମାନେ ବହୁ ଅମୂଲ୍ୟ ଶିକ୍ଷା ଲାଭ କରି ପାରିବେ ।

ଆଶାକରେଁ ଉତ୍କଳୀୟ ନରନାରୀମାନେ ଏହି ସଂକ୍ଷିପ୍ତ ଜୀବନୀ ପାଠ କରି ନିଜର ଜୀବନକୁ ସେହିପରି ଉଚ୍ଚ ଭାବାପନ୍ନ କରି ପାରିବେ । ତାହା ହୋଇ ପାରିଲେ ମୁଁ ନିଜର ଶ୍ରମକୁ ସାର୍ଥକ ମନେ କରିବି ।

ଜଗନ୍ନାଥାନନ୍ଦ

ଏହି ପୁସ୍ତକ ପ୍ରକାଶନ ଦଗରେ ଶ୍ରୀଯୁକ୍ତ ବାମଦେବ ମିଶ୍ର ଓ ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର ସେନଗୁପ୍ତ ମହାଶୟ ମୋତେ ଉତ୍ସାହିତ କରିଥିବାରୁ ମୁଁ ସେମାନଙ୍କୁ ଧନ୍ୟବାଦ ଅର୍ପଣ କରୁଛି ।

ପ୍ରଣେତା

# ସୂଚୀ

| ବିଷୟ | ପୃଷ୍ଠାଙ୍କ |
|---|---|



## ଶ୍ରୀ ଶ୍ରୀ ମାଆଙ୍କ ଉପଦେଶ



———

# ଶୁଦ୍ଧି

| ପୃଷ୍ଠା | ଧାଡ଼ି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୪୮ | ୧୦ | ଠାକୁରେ | ମା, |
| ୪୯ | ୨୧ | ସ୍ଥଚ୍ଛ | ସ୍ବଚ୍ଛ |
| ୫୩ | ୨ | ଅଦେଶ | ଆବେଶ |
| ୯୩ | ୨୩ | ୨୭ ବର୍ଷ | ୬୭ ବର୍ଷ |
| ୯୨ | ୯ | ମାଉଁଣ | ପାଉଁଣ |

ଯା ଦେବୀ ସର୍ବଭୂତେଷୁ ମାତୃରୂପେଣ ସଂସ୍ଥିତା
ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋନମଃ ।

# ପିତୃ ପରିଚୟ

ପଶ୍ଚିମ ବଙ୍ଗର ବାଙ୍କୁଡ଼ା ଜିଲ୍ଲାରେ ଜୟରାମବାଟୀ ନାମକ ଗୋଟିଏ ପଲ୍ଲୀ ବିଦ୍ୟମାନ । ଜିଲ୍ଲାଟି କଲିକତାଠାରୁ ଷାଠିଏ ମାଇଲ ଦୂରରେ ଏବଂ ଗ୍ରାମଟି ଉକ୍ତ ଜିଲ୍ଲାର ଦକ୍ଷିଣ ପୂର୍ବ ପ୍ରାନ୍ତରେ ଅବସ୍ଥିତ । ସେ ଗ୍ରାମରେ ବହୁ ଜାତିର ବହୁ ଲୋକ ବାସ କରୁଥିଲେ । ପାଶ୍ଚାତ୍ୟ ସଭ୍ୟତା ସେଠାରେ ବିଶେଷ ପ୍ରବେଶ କରି ନ ଥିଲା । ତେଣୁ ଗ୍ରାମର ଲୋକମାନେ ପୁରୁଣା ରୀତି ନୀତିରେ ଚଳିବାରେ ଅଭ୍ୟସ୍ତ ଥିଲେ ।

ଜୟରାମବାଟୀ ଗ୍ରାମର ଉତ୍ତରରେ ଗୋଟିଏ ଶସ୍ୟଶ୍ୟାମଳ କ୍ଷେତ୍ର ପଡ଼ିଆ ଅଛି । ତାହା ଅତିକ୍ରମ କରିଗଲେ ଆମୋଦର ନଦୀ ପଡ଼େ । ନଦୀଟି କ୍ଷୁଦ୍ର ଓ ତାହାର ଜଳ ଅତି ସ୍ୱଚ୍ଛ, ଗଭୀରତା ଅଳ୍ପ— ଅନ୍ତଃସଲିଳା ଫଲ୍‌ଗୁ ନଦୀ ପରି । ଗ୍ରାମବାସୀ ଏହାକୁ ଗଙ୍ଗାବତ୍ ଜ୍ଞାନକରି ତହିଁରେ ସ୍ନାନ ଧ୍ୟାନ କରିଥାନ୍ତି । ନଦୀର ଅନ୍ୟ ପଟେ ଦେଶଡ଼ା ନାମକ ଗୋଟିଏ ବିଶାଳ ଗ୍ରାମ । ନଦୀ ପାଖରେ ଗୋଟିଏ ଦୂର୍ବା-ପୁଷ୍ପାବୃତ ଶ୍ମଶାନ । ତାହା ବଟ, ଅଶ୍ୱତ୍ଥ, ଆମ୍ରାଦି ବୃକ୍ଷ ଦ୍ୱାରା ସୁଶୋଭିତ । ତେଣୁ କୌଣସି କୌଣସି ସାଧକ ଓ ଭକ୍ତ ସେଠାରେ ସାଧନ ଭଜନ କରିଥାନ୍ତି ।

ଗ୍ରାମବାସୀମାନେ ପ୍ରାଚୀନ ଅଗ୍ରୁର ନିଷ୍ଠାରେ ଅତ୍ୟଧିକ ବିଶ୍ୱାସୀ ଓ ଶ୍ରଦ୍ଧାଶୀଳ ଥିବାରୁ ପୂଜା, କୀର୍ତ୍ତନ, ପାଲଗୀତ, ଦୁର୍ଗାପୂଜା, କାଳୀପୂଜା, ଅଷ୍ଟପ୍ରହର ହରିକୀର୍ତ୍ତନ କରିଥାନ୍ତି । ପୁଣ୍ୟ କାର୍ଯ୍ୟରେ ସେମାନଙ୍କର ଉତ୍ସାହ ଅନନ୍ତ ଦେଖାଯାଏ । ପୁଣି ଜୟରାମବାଟୀ ଗ୍ରାମସ୍ଥ ଦେବତା 'ସିଂହ ବାହିନୀ' ଅତି ପ୍ରସିଦ୍ଧା ଥିବାରୁ ଗ୍ରାମାନ୍ତରରୁ ଲୋକମାନେ ଆସି ଦେବୀଙ୍କ ପୂଜା ଅର୍ଚ୍ଚନା କରି ଆନନ୍ଦ ଲାଭ କରନ୍ତି ।

ଏହି ଜୟରାମବାଟୀ ଗ୍ରାମରେ ଶ୍ରୀଯୁକ୍ତ ରାମଚନ୍ଦ୍ର ମୁଖୋପାଧ୍ୟାୟ ନାମକ ଜଣେ ବ୍ରାହ୍ମଣ ବାସ କରୁଥିଲେ । ସେ ଅତି ନିଷ୍ଠାବାନ, ସରଳ ଓ ଉଦାରପ୍ରକୃତି ଥିଲେ । ତାହାଙ୍କର କୁଳଦେବତା ରଘୁକୁଳତିଳକ ଶ୍ରୀ ରାମଚନ୍ଦ୍ର । ସ୍ୱୀୟ ଇଷ୍ଟ ଦେବତାଙ୍କଠାରେ ତାହାଙ୍କର ଐକାନ୍ତିକୀ ଭକ୍ତି ଓ ପ୍ରୀତି ଥିଲା । ସେ ପରୋପକାରୀ ଓ ନିରଭିମାନୀ ବୋଲି ପରିଚିତ । ତାହାଙ୍କର ସହଧର୍ମିଣୀ ଶ୍ୟାମାସୁନ୍ଦରୀ ଦେବୀ ମଧ୍ୟ ସର୍ବଗୁଣରେ ଭୂଷିତା । ସେ ଗୃହକର୍ମକୁଶଳା, ଚରିତ୍ରବତୀ, ଭକ୍ତିମତୀ, କର୍ତ୍ତବ୍ୟପରାୟଣା ଓ ସ୍ୱାମୀଙ୍କ ଅନୁରୂପା । ସେ ଶିହଡ଼ର ଶ୍ରୀଯୁକ୍ତ ହରିପ୍ରସାଦ ମଜୁମଦାରଙ୍କ କନ୍ୟା । ଯଥାସମୟରେ ଶ୍ରୀଯୁକ୍ତ ରାମଚନ୍ଦ୍ର ମୁଖୋପାଧ୍ୟାୟଙ୍କ ସହିତ ତାହାଙ୍କର ଶୁଭ ବିବାହ ହୋଇଥିଲା ।

ରାମଚନ୍ଦ୍ରଙ୍କର ଆର୍ଥିକ ଅବସ୍ଥା ସେପରି ସ୍ୱଚ୍ଛଳ ନ ଥିଲା । ଦରିଦ୍ର ହେଲେ ମଧ୍ୟ ଭଗବାନ୍ ଶ୍ରୀ ରାମଚନ୍ଦ୍ରଙ୍କ ଉପାସନା ଓ ଧର୍ମ କର୍ମରୁ ବିରତ ନ ଥିଲେ, କିମ୍ବା ଗୃହରେ ମୁଠିଏ ଚାଉଳ ଥିବାଯାଏ ଅତିଥି ଅଭ୍ୟାଗତମାନଙ୍କୁ ନିରାଶ କରୁ ନ ଥିଲେ । ତାହାଙ୍କର ଯାହା ଧାନ ଜମି ଥିଲା ସେଥିରେ କୌଣସି ମତେ ସଂସାର ନିର୍ବାହ କରୁଥିଲେ । କେତେ କେତେ ବର୍ଷ ଫସଲ ଭଲ ହେଲେ ଉଦ୍‌ବୃତ୍ତ ହେଉଥିଲା ।

ଏହି ବ୍ରାହ୍ମଣ ଦମ୍ପତୀଙ୍କର ଗରିବମାନଙ୍କ ପ୍ରତି ଅପାର କରୁଣା-
ଓ ଅଶେଷ ସହାନୁଭୂତି ଥିଲା । ଇଂ ୧୮୬୪ ଖ୍ରୀଷ୍ଟାବ୍ଦରେ ଯେଉଁ
ଭୀଷଣ ଦୁର୍ଭିକ୍ଷ ପଡ଼ିଥିଲା ତାହା ସ୍ମରଣୀୟ ଘଟଣା । ଖାଇବାକୁ ନପାଇ
ଅସଂଖ୍ୟ ଲୋକ ମରିଗଲେ । କିନ୍ତୁ ରାମଚନ୍ଦ୍ର ମୁଖୋପାଧ୍ୟାୟ ବହୁ
କଷ୍ଟରେ ଜଗା ସୁଝା ବନ୍ଦୋବସ୍ତ କରି କିଛି ଧାନ ସଞ୍ଚୟ କରିଥିଲେ ।
ଯେତେବେଳେ ସେ ଦେଖିଲେ ଲୋକମାନେ ଖାଇବାକୁ ନ ପାଇ
ଦଳ ଦଳ ହୋଇ ବୁଲୁଛନ୍ତି, 'ମୁଠିଏ ଭିଖ ଦିଅ, ତୋଡ଼ାଣି ଟିକିଏ
ଦିଅ' ବୋଲି ଆର୍ତ୍ତନାଦ କରୁଛନ୍ତି, ସେତେବେଳେ ତାହାଙ୍କର
ହୃଦୟ ବିଗଳିତ ହୋଇଗଲା । ନିଜର ପିଲା ଛୁଆ କଅଣ ଖାଇବେ
ସେ କଥା ନ ଭାବି ଅମାରରେ ଯାହା ଧାନ ଥିଲା ସେଥିରେ ଖେଚଡ଼ି
ରାନ୍ଧି ସମସ୍ତଙ୍କୁ ଖାଇବାକୁ ଦେଲେ । ଧାନ ସରିଲା ସବୁ ପର୍ଯ୍ୟନ୍ତ
ଅନ୍ନଛତ୍ର ଖୋଲି କ୍ଷୁଧାର୍ତ୍ତ ଗରିବମାନଙ୍କୁ ଅକାଳରେ ଅନ୍ନ ଦାନ
କଲେ ।

## ଜନ୍ମ

ପୂର୍ବଜନ୍ମାର୍ଜିତ ଓ ପୁଣ୍ୟଫଳ ପ୍ରଭାବରୁ ସର୍ବସୁଲକ୍ଷଣା ଦେବୀ-
ସ୍ୱଭାବସମ୍ପନ୍ନା ପରମ ମନୋହର କନ୍ୟାରତ୍ନ ମୁଖୋପାଧ୍ୟାୟ ଦମ୍ପତୀ
ଲାଭ କଲେ । ପିତାମାତାଙ୍କ ଅଙ୍କ ଉଜ୍ଜ୍ୱଳ କରି ଶ୍ରୀମତୀ ସାରଦା ଦେବୀ
ତାହାଙ୍କ ଗୃହକୁ ଆଗମନ କଲେ । ଇଂ ୧୮୫୩ ଖ୍ରୀ, ତା ୨୨ ରିଖ
ଡିସେମ୍ବର, ୧୨୬୦ ସାଲ, ତା ୮ ରିଖ ପୌଷମାସ ଗୁରୁବାର,
କୃଷ୍ଣା ସପ୍ତମୀ ତିଥିରେ ଏହାଙ୍କର ଜନ୍ମ । ଶ୍ୟାମାସୁନ୍ଦରୀ ଅତି ଶୁଭ
କ୍ଷଣରେ ସନ୍ଧ୍ୟା ୨ ଦଣ୍ଡ ୯ ପଳ ସମୟରେ ଦିବ୍ୟଲକ୍ଷଣା ସୁକୁମାରୀ
କନ୍ୟାଟିଏ ପ୍ରସବ କରିବାରୁ ରାମଚନ୍ଦ୍ରଙ୍କ ଗୃହ ମଙ୍ଗଳ ଧ୍ୱନିରେ

ପରିପୂର୍ଣ୍ଣ ହେଲା । କ୍ଷୁଦ୍ର ଗ୍ରାମର ଘରେ ଘରେ ଏହି ଶୁଭ ବାର୍ତ୍ତା ପହଞ୍ଚିବାକୁ ବିଳମ୍ବ ହେଲା ନାହିଁ । କାଳକ୍ରମେ ଏହି ଜନ୍ମୋତ୍ସବ ସେହି ଗ୍ରାମରେ ଆବଦ୍ଧ ନ ରହି ପୃଥିବୀବ୍ୟାପୀ ଅନୁଷ୍ଠିତ ହେଉଅଛି ଓ ଏହି ଜନ୍ମତିଥିରେ ଭକ୍ତମାନେ ପ୍ରତିବର୍ଷ ତାହାଙ୍କ ଜୟଗାନ କରୁଅଛନ୍ତି ।

ତହିଁ ଉତ୍ତାରୁ ଯଥାବିହିତ କର୍ମାନୁଷ୍ଠାନ କରି ପିତା ରାମଚନ୍ଦ୍ର ଜ୍ୟୋତିଷଙ୍କୁ ଡକାଇ କନ୍ୟାର ଜନ୍ମପତ୍ରିକା ସମ୍ପାଦନ କରି ରାଶିର ନାମ ଶ୍ରୀମତୀ ଠାକୁରମଣି ଦେବୀ ଓ ଲୋକପ୍ରଚଳିତ ନାମ ଶ୍ରୀମତୀ ସାରଦା ରଖିଲେ ।

ଯେଉଁଠାରେ ସେ ଜନ୍ମ ଗ୍ରହଣ କରିଥିଲେ, ବର୍ତ୍ତମାନ ସେହି ଜନ୍ମସ୍ଥାନ ଜୟରାମ ବାଟୀରେ ତାହାଙ୍କର ନବ ମନ୍ଦିର ନିର୍ମିତ । ସେହି ମନ୍ଦିରର ଚୂଡ଼ା 'ମା' ନାମାଙ୍କିତ । ଦେଶ ବିଦେଶରୁ ସମାଗତ ଭକ୍ତମାନଙ୍କର ତାହା ମହାପୀଠସ୍ଥଳୀ ରୂପେ ପରିଗଣିତ ।

ପିତାମାତା ନବଜାତ କନ୍ୟାଟିକୁ ଅତ୍ୟନ୍ତ ସ୍ନେହରେ ଲାଳନ ପାଳନ କରିବାକୁ ଲାଗିଲେ । ଶ୍ରୀମତୀ ଶ୍ୟାମାସୁନ୍ଦରୀ କନ୍ୟାର ମୁଖାବଲୋକନରେ ଅପାର ଆନନ୍ଦ ଅନୁଭବ କଲେ ଏବଂ ଦିନୁ ଦିନ ତାହାଙ୍କର ସନ୍ତାନବାତ୍ସଲ୍ୟ ବଢ଼ିବାକୁ ଲାଗିଲା । ସଂସାରର ଦୁଃଖ ଦରିଦ୍ରତା ବେଳେବେଳେ ତାଡ଼ନା ଦେଉଥିଲେ ମଧ୍ୟ କନ୍ୟାର ମୁଖାବଲୋକନ କରି ସେ ସବୁ ପାଶୋରି ଦେଉଥିଲେ । ସେମାନଙ୍କର ଆଦର ଯତ୍ନରେ କନ୍ୟା କ୍ରମେ ବଡ଼ ହୋଇ ଉଠିଲେ । ବୁଲିଚାଲି କରିବା ଓ ବାଳିକାମାନଙ୍କ ସଙ୍ଗରେ ମିଳିମିଶି ଖେଳିବା ପାଇଁ ତାହାଙ୍କର ଆଗ୍ରହ ପ୍ରକାଶ ପାଇଲା । ପିଲାଦିନରୁ ତାଙ୍କର ସ୍ୱଭାବ

ଅତି ଶାନ୍ତ । ସେ ତାହାର ସଙ୍ଗରେ କଳି ଲଗାଇବା ଦୂରେ ଅନ୍ୟ ପିଲାଙ୍କ ମଧ୍ୟରେ କଳି ମେଣ୍ଟାଇବା ତାହାଙ୍କର ସ୍ୱଭାବ ଥିଲା । ତାହାଛଡ଼ା ଶ୍ରୀ ସାରଦା ଯେତେବେଳେ ଏକୁଟିଆ ବସିଥାନ୍ତି କିମ୍ବା କୌଣସି କାମ କରୁଥାନ୍ତି ସେତେବେଳେ ଅବିକଳ ତାହାଙ୍କ ପରି କେଉଁଠୁ ଅନ୍ୟ ଗୋଟିଏ ବାଳିକା ଆସି ତାହାଙ୍କ ସଙ୍ଗରେ ଖେଳେ ବୁଲେ, ହସେ ଥଟ୍ଟା କରେ । କିନ୍ତୁ ଅନ୍ୟ କେହି ଆସିଲେ ସେହି ବାଳିକା ପୁଣି କେଉଁଠି ଅନ୍ତର୍ହିତ ହୋଇ ଯାଉଥାଏ ।

ଶ୍ରୀ ସାରଦା ଦରିଦ୍ର ଗୃହରେ ଜନ୍ମ ଲାଭ କରିଥିବାରୁ ଶୈଶବରୁ ତାହାଙ୍କୁ ଗୃହକର୍ମରେ ସାହାଯ୍ୟ କରିବାକୁ ପଡୁଥିଲା । ଗରିବ ପିଲାଙ୍କ ପରି ସେ ଜୀବନ ଯାପନ କରୁଥିଲେ । ବୟୋବୃଦ୍ଧି ସଙ୍ଗେ ସଙ୍ଗେ ତାହାଙ୍କ ମାଆଙ୍କୁ ସବୁକାମରେ ସେ ଯଥାସମ୍ଭବ ସାହାଯ୍ୟ କରୁଥିଲେ । ରାନ୍ଧିବା, ଗାଈ ଗୋରୁଙ୍କ ପାଇଁ ଘାସ କାଟି ଆଣିବା, ବିଲରୁ ଧାନ ବୋହି ଆଣିବା, ହଳିଆମାନଙ୍କ ପାଇଁ ବିଲକୁ ଜଳଖିଆ ନେଇଯିବା ପ୍ରଭୃତି ତାହାଙ୍କର ନିତ୍ୟ କର୍ମ ଥିଲା । ପିଲା-ଦିନରୁ ଆଳସ୍ୟ କଅଣ ସେ ଜାଣି ନ ଥିଲେ । ସର୍ବଦା ତାହାଙ୍କୁ ଗୃହରେ କଠୋର ପରିଶ୍ରମ କରିବାକୁ ପଡୁଥିଲା । ପିତାଙ୍କର ଯାହା କିଛି ଧାନ ଜମି ଥିଲା ତହିଁରେ ସଂସାର ନିର୍ବାହ କରିବା କଠିନ ହୋଇ ପଡ଼ୁଥିଲା । ତେଣୁ ପିତା ରାମଚନ୍ଦ୍ର କପା ଚାଷ କରୁଥିଲେ । ଶ୍ରୀ ସାରଦା ସେହି ଖେତରୁ କପା ଆଣି ତୁଳା ଭଣି ସୂତା କାଟୁଥିଲେ । ପୁଣି ସେ ବଡ଼ ଭଉଣୀ ଥିବାରୁ ତାଙ୍କୁ ସାନ ଭାଇଙ୍କ ଦେଖାଜତ୍ ଓ ତତ୍ତ୍ୱାବଧାନ କରିବାକୁ ପଡ଼ୁଥିଲା । ତାହାଙ୍କର ପ୍ରସନ୍ନ, ଉମେଶ, କାଳୀ, ବରଦା ଓ ଅଭୟ ନାମକ ଆହୁରି ପାଞ୍ଚୋଟି ସାନଭାଇ ଥିଲେ । ସେମାନଙ୍କୁ ସେ ସଙ୍ଗରେ ଗ୍ରାମପାଠଶାଳାକୁ

ନେଇ ଯାଉଥିଲେ । ଭାଇମାନଙ୍କୁ ଘେନି ସେ ଗଙ୍ଗାସ୍ନାନକୁ ଯାଉଥାନ୍ତି । ଅମୋଦର ନଦୀ ଥିଲା ସେମାନଙ୍କର ଗଙ୍ଗା । ନଦୀରେ ସ୍ନାନ କରି ସେଠାରେ ଗଛମୂଳରେ ବସି ଜଳଖିଆ ଖାଇ ପୁଣି ଭାଇମାନଙ୍କ ସଙ୍ଗରେ ଘେନି ଘରକୁ ଆସୁଥିଲେ ।

ପାଠଶାଳାରେ ପାଠ ପଢ଼ିବାକୁ ସାରଦାଙ୍କର ସୁଯୋଗ ନ ଥିଲା । ଗୃହରେ ମାଆବାପାଙ୍କୁ ସବୁକାମରେ ସାହାଯ୍ୟ କରି ଭାଇମାନଙ୍କୁ ଦେଖାଶୁଣା କରି ଆଉ ସମୟ କାହିଁ ଯେ ସେ ପାଠ ପଢ଼ିବେ । ତେଣୁ ସେ ସାମାନ୍ୟ ଲେଖା ପଢ଼ା ଶିଖିଥିଲେ । ଭାଇମାନଙ୍କୁ ସଙ୍ଗରେ ଘେନି ପାଠଶାଳାକୁ ନେଇଯିବାବେଳେ ଯେତିକି ଶିଖିବାର ସୁଯୋଗ ମିଳିଥିଲା ସେତିକି ସେ ଲାଭ କରିଥିଲେ ।

ପଢ଼ାରେ ଯେ ତାହାଙ୍କର ବିଶେଷ ଅନୁରାଗ ଥିଲା ତାହା ପରବର୍ତ୍ତୀ ଜୀବନରୁ ସ୍ପଷ୍ଟ ଜଣାଯାଏ । ହୃଦୟ ( ଶ୍ରୀ ରାମକୃଷ୍ଣଙ୍କ ଭଣଜା) ବାଧା ଦେଲେ ମଧ୍ୟ ଗୋପନରେ ବହି ଆଣି ନିଜ ଚେଷ୍ଟାରେ ସେ କିଛି ବିଦ୍ୟା ଆୟତ୍ତ କରିଥିଲେ ଏବଂ ବଙ୍ଗଳା ରାମାୟଣ ଓ ମହାଭାରତ ପଢ଼ି ପାରୁଥିଲେ ।

## ବିବାହ

ପ୍ରାଚୀନ ହିନ୍ଦୁ ସମାଜରେ ବାଲ୍ୟ ବିବାହ ପ୍ରଥା ପ୍ରଚଳିତ ଥିଲା । କନ୍ୟାଟିଏ ଜନ୍ମ ହେଲାକ୍ଷଣି ପିତାମାତା ତାକୁ ହସ୍ତାନ୍ତର କରିବାଲାଗି ବ୍ୟାକୁଳ ହେଉଥିଲେ । ଭାରତର ସବୁ ଲୋକମାନେ ଏହି ରୂପ ବାଲ୍ୟ ବିବାହକୁ ଅନୁମୋଦନ କରୁଥିଲେ । ବାଳିକାକୁ ପାତ୍ରସ୍ଥା କରିଦେବାହିଁ ପୁଣ୍ୟ, ଏହି ମତ ଜୟରାମବାଟୀ ଗ୍ରାମରେ ମଧ୍ୟ

ଥିଲା । ତେଣୁ ଶ୍ରୀ ସାରଦା ଦେବୀଙ୍କର ଛଅବର୍ଷ ସମୟରେ ଶ୍ରୀ ରାମକୃଷ୍ଣ ଦେବଙ୍କ ସହିତ ବିବାହ ହୋଇଥିଲା ।

ଯେତେବେଳେ ଦକ୍ଷିଣେଶ୍ୱରରେ ଶ୍ରୀଯୁକ୍ତ ଗଦାଧର (ଶ୍ରୀ ରାମକୃଷ୍ଣ ପରମହଂସ ଦେବ ) ଦୀର୍ଘ ଦ୍ୱାଦଶ ବର୍ଷ କଠୋର ସାଧନା ଫଳରେ ଈଶ୍ୱରୀୟ ପ୍ରେମରେ ଉନ୍ମତ୍ତ, ଈଶ୍ୱର ଲାଭ କରିବା ପାଇଁ ଘୋର ବ୍ୟାକୁଳ, ସେତେବେଳେ ତାହାଙ୍କ ବାହ୍ୟ ଅଦ୍ଭୁତ ବ୍ୟବହାର ସଂସାରୀ ଲୋକଙ୍କ ନିକଟରେ ବାୟୁରୋଗୀର ପରି ପ୍ରତୀତ ହେଲା । ତେଣୁ ଶ୍ରୀ ଗଦାଧରଙ୍କ ମାତା ଚନ୍ଦ୍ରାମଣି ଦେବୀ ପୁଅକୁ ଘରକୁ ଆଣାଇ ବାୟୁରୋଗ ଉପଶମ ନିମନ୍ତେ କେତେ ପ୍ରକାର ଶାନ୍ତି ସ୍ୱସ୍ତ୍ୟୟନ କରିବାକୁ ଲାଗିଲେ । ଗୁଣିଆ ଡକାଇ ତାହାଙ୍କୁ ଝଡ଼ାଇଲେ, ଶିବଙ୍କ ପାଖରେ ନିଜେ ଧାରଣା ଦେଲେ । ସେଥିରେ କିଛି ସୁଫଳ ଦେଖାଗଲା ନାହିଁ । ଅବଶେଷରେ ଚନ୍ଦ୍ରାମଣି ଦେବୀ ଭାବିଲେ, ପୁଅର ବୟସ ହେଲାଣି (ସେତେବେଳେ ଶ୍ରୀଗଦାଧରଙ୍କ ବୟସ ୨୪ ବର୍ଷ), ବିବାହ ଦେଲେ ହୁଏତ ଉଦାସୀନତା ଯୁଚିଯିବ, ସାଂସାରିକ ବିଷୟ ବାସନାପ୍ରତି ମନ ଫେରିଆସିବ । ତେଣୁ ଚନ୍ଦ୍ରାମଣି ଦେବୀ ତାହାଙ୍କ ମଧ୍ୟମ ପୁଅ ରାମେଶ୍ୱରଙ୍କୁ ତାଙ୍କ ପାଇଁ ଝିଅ ଅନ୍ୱେଷଣ କରିବାକୁ କହିଲେ । ରାମେଶ୍ୱର ବହୁ ସ୍ଥାନରେ ଅନୁସନ୍ଧାନ କରିମଧ୍ୟ ପାତ୍ରୀ ପାଇଲେ ନାହିଁ । ଯେଉଁଠାରୁ ବା ପାତ୍ରୀର ସନ୍ଧାନ ମିଳିଲା ତାହା ମଧ୍ୟ ତାହାଙ୍କ ମନୋମତ ହେଲା ନାହିଁ । ମାତା ଭାଇଙ୍କ ଝିଅ ଅନ୍ୱେଷଣ ବିଷୟ ଜାଣିପାରି ଦିନେ ଶ୍ରୀ ଗଦାଧର କହିଲେ, "ମାଆ, କାହିଁକି ଏତେ ଚିନ୍ତା କରୁଛ ? ବିବାହ ଦେବାଲାଗି ଏଣେ ତେଣେ କାହିଁକି ଦୌଡ଼ାଦୌଡ଼ି କରୁଛ ? ଜୟରାମବାଟୀ ଗ୍ରାମରେ ପାତ୍ରୀ ନିର୍ଦ୍ଦିଷ୍ଟ ଅଛି, ସେଠାକୁ ଯାଇ ଅନୁସନ୍ଧାନ କର ।"

ସତକୁ ସତ ସେଠାରେ ହିଁ ପାତ୍ରୀର ସନ୍ଧାନ ପାଇଲେ । ଶ୍ରୀଯୁକ୍ତ ରାମଚନ୍ଦ୍ର ମୁଖୋପାଧ୍ୟାୟ ତାହାଙ୍କ କନ୍ୟା ଶ୍ରୀ ସାରଦା ଦେବୀଙ୍କୁ ଶ୍ରୀ ଗଦାଧରଙ୍କ ସହିତ ବିବାହ ଦେବାକୁ ସମ୍ମତ ହେଲେ ।

ଅଳ୍ପଦିନ ମଧ୍ୟରେ ପାତ୍ର ପାତ୍ରୀଙ୍କ ଜନ୍ମ ପତ୍ରିକା ଦେଖାହୋଇ ସମସ୍ତ କଥା ସ୍ଥିର ହେଲା । ବର ପକ୍ଷରୁ କନ୍ୟାପଣ ୩୦୦ ଟଙ୍କା ଦେବାକୁ ପଡ଼ିଲା । ଇଂ ୧୮୫୯ ଖ୍ରୀ: ସମ୍ଭବତଃ ବୈଶାଖ ମାସରେ ଶୁଭ ବିବାହ କାର୍ଯ୍ୟ ସମ୍ପନ୍ନ ହେଲା ।

ଯେତେବେଳେ କାମାରପୁକୁରରୁ ବରଯାତ୍ରୀମାନେ ବରକୁ ସଙ୍ଗରେ ନେଇ ଜୟରାମବାଟୀ ଯାଉଥିଲେ ସେତେବେଳେ ଶ୍ରୀ ଗଦାଧର ଏକ କୌତୁହଳ ସୃଷ୍ଟିକରିଥିଲେ । ଏହା ଶିବ ପାର୍ବତୀଙ୍କ ବିବାହକୁ ସ୍ମରଣ କରାଇ ଦିଏ । ଯେତେବେଳେ ମହାଯୋଗୀ ମହାଦେବ ହିମାଚଳତନୟା ଉମାଙ୍କୁ ବିବାହ କରିବାକୁ ଯାଇଥିଲେ ସେତେବେଳେ ସଙ୍ଗରେ ବରଯାତ୍ରୀ ଥିଲେ ଭୂତ ପ୍ରେତ—ନନ୍ଦୀ ଭୃଙ୍ଗୀ; ବର ହେଉଛନ୍ତି ଦିଗମ୍ବର ମହେଶ୍ୱର, ବାଦ୍ୟ, ଭୂତ ପ୍ରେତଙ୍କ ଚିତ୍କାର ଧ୍ୱନି । ବୃଷଭସ୍ଥ ଉଲଗ୍ନ ମହାଦେବଙ୍କୁ ଘେରି ଘେରି ସେମାନେ ଭୈରବ ତାଳରେ ଗୀତ ଗାଇ ଗାଇ ଯାଉଥିଲେ ।

ଶ୍ରୀ ଗଦାଧର (ଶ୍ରୀ ରାମକୃଷ୍ଣ) ବିବାହ କରିବାକୁ ଯିବାବେଳେ ବରଯାତ୍ରୀଙ୍କ ସଙ୍ଗରେ କାହାଳୀ, ଭେରୀ, ତୂରୀ, ବାଜା, ଢୋଲ, ଗଡ଼ବାଣ, ଚନ୍ଦ୍ରପଣି କିଛି ନଥିଲା । ଗରିବ ଲୋକ, ସାଜ ସଜ୍ଜା କରିବାକୁ ପଇସା କେଉଁଠୁ ପାଇବେ ? ଏହି ଅଭାବ, ହେତୁ ଶ୍ରୀ ରାମକୃଷ୍ଣଙ୍କ ଭାଇ ରାମେଶ୍ୱରଙ୍କ ସ୍ତ୍ରୀଙ୍କ ମନରେ ଭାରି ଦୁଃଖ ।

ଶ୍ରୀ ରାମକୃଷ୍ଣ ତାହା ବୁଝି ପାରି କହିଲେ, ଏଥିଲାଗି ତାହାଙ୍କ ଦୁଃଖ କରୁଛ ? ସେ ନିଜେ ଅଙ୍ଗରେ ହାତମାରି ବାଜା ବଜାଇ ମୁହଁରେ ନାଚ ଦେଇ ଭୂତ ପରି ଶବ୍ଦ କରି, କେତେପ୍ରକାର ମୁଅଙ୍ଗ ଦେଖାଇ ତାହାଙ୍କୁ ଭୁଲାଇବାକୁ ଲାଗିଲେ । ତାହାଙ୍କୁ ଟୋକିଅମାନଙ୍କ ଅନୁକରଣ କରିବା ଦେଖି ଲୋକମାନେ ହସି ହସି ରହିଲେ । ବର ବିଭା ହେବାକୁ ଯିବା ବେଳେ ଅନ୍ୟ ନୂଆ ଓ ସଲଜ୍ଜ ଭାବରେ ତୁନି ହୋଇ ଯାଆନ୍ତି । କିନ୍ତୁ ତାଙ୍କୁ ସେପରି ଯିବାର ଦେଖା ଯାଇ ନ ଥିଲା । ନିଜ ଅଙ୍ଗରେ ଆଘାତକରି, ମୁହଁରେ ବାଦ୍ୟ ବଜାଇ, ନାନାପ୍ରକାର ଅଙ୍ଗ ଭଙ୍ଗୀ ଦେଖାଇ ହସି ଖେଳି ସେ ଯାଇଥିଲେ । ବରପାତ୍ରୀଙ୍କର ବେଶଭୂଷା ଥିଲା କାନରେ ଗାମୁଛା, କଟିରେ ବନ୍ଧା ଗୁଦର, ଦେହ ଉତ୍ତରୀୟହୀନ, ହାତରେ ଥିଲା ଠେଙ୍ଗା ।

ଏହି ବିବାହ ଶିବ ପାର୍ବତୀଙ୍କ ବିବାହ ପରି ହେବନାହିଁ କାହିଁକି ? ବର ଓ କନ୍ୟାଙ୍କର ଯଦି ଶୁଦ୍ଧ ପବିତ୍ର ଭାବ ଥାଏ, ଦୈହିକ ସମ୍ବନ୍ଧ ଶୂନ୍ୟ ହୁଏ, ଯଦି ସରଳତା ଥାଏ, ହରି ପାଦ ପଦ୍ମରେ ମନଟି ଯଦି ମଗ୍ନ ହୋଇଥାଏ, ତାହାହେଲେ ତାଙ୍କ ବିବାହଟି ଶିବ ପାର୍ବତୀଙ୍କ ବିବାହ ସଦୃଶ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ବିଚାର କଲେ—ଶ୍ରୀ ରାମକୃଷ୍ଣ ଦେବଙ୍କ ଯାହା ଅବସ୍ଥା ତାହା ଦୈହିକ ସମ୍ପର୍କଶୂନ୍ୟ, ମନଟି ଈଶ୍ୱରଙ୍କଠାରେ ଲୀନ, ଦେହବୁଦ୍ଧି ଶୂନ୍ୟ ଅତୀନ୍ଦ୍ରିୟ—ଅପ୍ରାକୃତ ଅବସ୍ଥା, ମହାଯୋଗୀ ସମାଧିମଗ୍ନ ପୁରୁଷ । କନ୍ୟାଟି ମଧ୍ୟ ତଦ୍ରୂପ, ପଞ୍ଚମ ବର୍ଷକୁ ଉତ୍ତୀର୍ଣ୍ଣ ହୋଇ ଷଷ୍ଠବର୍ଷରେ ପଦାର୍ପଣ କରିଛନ୍ତି । ଦୁଗ୍ଧପୋଷ୍ୟ କହିଲେ ଅତ୍ୟୁକ୍ତି ହେବନାହିଁ—ବାଳିକାମାତ୍ର । ଏ ଦମ୍ପତି ଦେହ ବୁଦ୍ଧିଶୂନ୍ୟ ଶୁଦ୍ଧ ପବିତ୍ର ।

ଶ୍ରୀ ଶ୍ରୀ ସାରଦା ଦେବୀଙ୍କ ଜୀବଦ୍ଦଶାରେ ଲିଖିତ ଶ୍ରୀ ଶ୍ରୀ ରାମକୃଷ୍ଣ ପୋଥିରୁ କେତେକାଂଶ ନିମ୍ନରେ ଉଦ୍ଧାର କରାଗଲା । ଏହା ପରମ ଭକ୍ତ ଶ୍ରୀଯୁକ୍ତ ଅକ୍ଷୟକୁମାର ସେନଙ୍କ ଦ୍ୱାରା ପ୍ରଣୀତ ।

"ଗ୍ରାମ୍ୟ ରମଣୀର୍ ମୁଖେ ମାଙ୍ଗଲିକ ଧ୍ୱନି
ଅହ୍ଲାଦେ ଢାଳେନ ନୃମଣ୍ଡ ଗ୍ରାମ ଠାକୁରାଣୀ,
ବାଦ୍ୟ ଘଣ୍ଟା ନାହଇଲ ବଡ଼ ଦୁଃଖୀ ମନ
ଅନ୍ତରେତେ ବୁଝିଲେନ ପ୍ରଭୁ ନାରାୟଣ ।
ସାନ୍ତ୍ୱନା କାରଣେ ତବେ ବଲିଲେନ ତାଁରେ
ଦେଖ ଶୁନ କିବା ବାଦ୍ୟ ବାଜିଛେ ବିବାହେ ।
ଏତ ବଲି ଦେନ ମୁଖେ ବୋଲ ପରିପାଟି,
ଢେଲେ ଗୁ ଢେଲେ ଗୁ ଢେଲେ ଢେଲେ ଢେଲେ କାଠି ।
ଢୋଲେର ସ୍ୱରୂପ ହାତେ ପାଛା ବଜାଇୟା
ବାଜାନ ଢୋମେର ବାଦ୍ୟ ନାଚିୟା ନାଚିୟା ।
ଛୋନଇ ସରମ ଲଜ୍ଜା ନାହିଁ ଶ୍ରୀପ୍ରଭୁର
ସରଲ ସହଜ ସୋଜା ଗଦାଇ ଠାକୁର ।
ବିବାହେତେ ଲଜ୍ଜାହୀନ ଯତ ହୟ ନର
ତଥାପି ସଲଜ୍ଜ ବାଦ୍ୟ ଛଣ୍ଡ ଜଡ଼ ସ୍ୱର ।
ପ୍ରଭୁର ଦେଃହ ଲଜ୍ଜା ଗନ୍ଧ ମାତ୍ର ନାଇ
ବୁଝିତେ ଏସବ କଥା ବାଲ୍ୟଭାବେ ଗୁଇ ।
ରଙ୍ଗେ ମାତ ବରଯାତ୍ରୀ ଯୁଟିୟା ସକଲେ
ଆଗେ ପାଛେ ଶ୍ରୀପ୍ରଭୁର ବିଦ୍ୟୋଦତେ ଚଲେ ।
ଶୁନ କଥା ନୈବେର ବିବାହ ମନେ ପଡ଼େ
ଉମା ସଂଙ୍ଗ ଯେଲ ବାର ଚଲ ଅଗାରେ

ମହାରଙ୍ଗୀ ନନ୍ଦୀ ଭୃଙ୍ଗୀ ଭୈରବ ବେତାଳ
ଦୈତ୍ୟଦାନା ଧୂର୍ତ୍ତିପନା ଖାସ ଅଳ ଥାଳ,
ଶୃଙ୍ଗ ଧାରେ ଯାଯ଼ 'ଦେଖେ ଷାଁଡେ ଦିଗମ୍ବର ।
ସେହି ମତ ବରଯାନୀ ଶ୍ରୀପ୍ରଭୁର ସାଥେ
ଖୋଲ ପାଯ଼ ଖୋଲ ଗାଯ଼ ପୋଷାକଟି ହାତେ ।” ଇତ୍ୟାଦି

ଶୁଭକ୍ଷଣରେ ଜୟରାମବାଟୀରେ ଶ୍ରୀ ରାମକୃଷ୍ଣଙ୍କର ଶ୍ରୀ ସାରଦା ଦେବୀଙ୍କ ସହିତ ବିବାହ ହୋଇଗଲା । ତହିଁ ଉତ୍ତାରୁ ବର ବଧୂଙ୍କୁ ସଙ୍ଗରେ ନେଇ ରାମେଶ୍ୱର ନିଜ ଗୃହକୁ ଆସିଲେ । ଚନ୍ଦ୍ରାମଣି ବଧୂର ମୁଖାବଲୋକନ କରି ଆନନ୍ଦିତା ହେଲେ । ବର ବଧୂଙ୍କୁ ଦର୍ଶନପାଇଁ ଆସୁଥିବା ଗ୍ରାମର ପ୍ରତିବେଶୀ ଲୋକମାନଙ୍କ ଦ୍ୱାରା କାମାରପୁକୁରର ଦରିଦ୍ର କୁଟୀର ଖଣ୍ଡିକ ମଙ୍ଗଳ ଧ୍ୱନି ଓ ଆନନ୍ଦରେ ପରିପୂର୍ଣ୍ଣ ହେଲା ।

ଶ୍ରୀ ରାମକୃଷ୍ଣଙ୍କ ମାତା ଚନ୍ଦ୍ରାମଣି ଦେବୀ ମାଙ୍ଗଳିକ ଶୁଭବିବାହ ଉତ୍ସବରେ ପରମ ସୁଖୀ ହେଲେହେଁ ଗୋଟିଏ ଘଟଣାରେ ତାହାଙ୍କର ମର୍ମ ବେଦନା ଉପସ୍ଥିତ ହୋଇଥିଲା । ବିବାହ ଦିନ ନବବଧୂଙ୍କୁ କେତେଗୁଡ଼ିଏ ଅଳଙ୍କାର ଲାହା ବାବୁଙ୍କ (ପାର୍ଶ୍ୱସ୍ଥ ପଡ଼ୋଶୀ ଜମିଦାରଙ୍କ) ଘରୁ ମାଗିଆଣି ଦେଇଥିଲେ । ଗହଣା ଗଢ଼ି ଦେବାରେ ତାହାଙ୍କ ସାମର୍ଥ୍ୟ ନ ଥିବାରୁ ଅନ୍ୟ ଘରୁ ମାଗିଯାଚି ନିଜର ସମ୍ଭ୍ରମ ରକ୍ଷା କରିଥିଲେ । ବର୍ତ୍ତମାନ ତାହାଙ୍କୁ ଅଳଙ୍କାର ଫେରାଇ ଦେବାକୁ ପଡ଼ିବ, ସେଥିଲାଗି ଚନ୍ଦ୍ରାମଣିଙ୍କର ଭାରି ଦୁଃଖ । ବାଳିକା ବଧୂଙ୍କ ଅଙ୍ଗରୁ କିପରି ଅଳଙ୍କାରଗୁଡ଼ିକ କାଢ଼ି ନେବେ ? ଏହା କଅଣ ଶାଶୁ ପ୍ରାଣରେ ସହ୍ୟ ହୁଏ ? ଶ୍ରୀ ରାମକୃଷ୍ଣ ମାଆଙ୍କ ମନଦୁଃଖ କଥା ଜାଣି ପାରି ବାଳିକା ବଧୂ ଶୋଇଥିବା ବେଳେ ଅଳଙ୍କାରଗୁଡ଼ିକ ତାହାଙ୍କ ଅଙ୍ଗରୁ କାଢ଼ିନେଲେ । ଏପରି କୌଶଳରେ ନେଲେ ଯେ ବାଳିକା

କିଛିମାତ୍ର ଜାଣି ପାରିଲେ ନାହିଁ । ନିଦ ଭାଙ୍ଗିଲା ଉତ୍ତାରୁ ବାଳିକା ଦେଖିଲେ ଯେ ଯେଉଁ ଗହଣା ପିନ୍ଧିଥିଲେ ସେ ସବୁ ନାହିଁ । "ମୋ ଦେହରୁ ଗହଣା କିଏ ନେଲା, କିଏ ନେଲା" ବୋଲି ଚିତ୍କାର କରିବାରୁ ମାତା ଚନ୍ଦ୍ରାମଣି ଦେବୀ ସାଶ୍ରୁନୟନରେ ତାହାଙ୍କୁ କୋଡ଼ରେ ବସାଇ ବୁଝାଇ ସୁଝାଇ କହିଲେ, "ମା, ଏହା ଅପେକ୍ଷା ଭଲ ଗହଣା ଗଦାଇ (ଶ୍ରୀ ରାମକୃଷ୍ଣ) ଗଢ଼ିଦେବ, ତୁମେ ଦୁଃଖ କରନା" । କନ୍ୟାଙ୍କ ଖୁଡ଼ତାତ ବାଳିକାକୁ ଦେଖିବାକୁ ଆସି ସମସ୍ତ ଘଟନା ଜାଣି ପାରି ବିରକ୍ତ ହୋଇ ସେହିଦିନ ତାହାଙ୍କୁ ଜୟ-ରାମବାଟୀ ଘେନି ଗଲେ ।

ମାତା ଚନ୍ଦ୍ରାମଣିଙ୍କ ଅଗ୍ରହାତିଶଯ୍ୟ ବଶତଃ ଶ୍ରୀ ରାମକୃଷ୍ଣ କାମାରପୁକୁରରେ ପ୍ରାୟ ଦୁଇବର୍ଷ କାଳ ଥିଲେ । ଏଥିମଧ୍ୟରେ ଶ୍ରୀ ରାମକୃଷ୍ଣ ଥରେ ତାହାଙ୍କ ଶ୍ୱଶୁରାଳୟ ଜୟରାମବାଟୀକୁ ଯାଇଥିଲେ । ସେତେବେଳେ ବାଳିକାର ସପ୍ତମବର୍ଷ ମାତ୍ର । ତାହାଙ୍କୁ ଦେଖି କେହି କିଛି କହି ନ ଥିଲେ ମଧ୍ୟ ଶ୍ରୀ ସାରଦା ସ୍ୱାମୀଙ୍କ ପାଦ ଧୋଇ ଦେଇଥିଲେ । ତାହା ଦେଖି ଅନ୍ୟାନ୍ୟ ସଙ୍ଗୀ ବାଳିକାମାନେ ହସିବାକୁ ଲାଗିଲେ ।

## ପତି ସନ୍ଦର୍ଶନ

ଶ୍ରୀ ରାମକୃଷ୍ଣ ଦେବ (ଗଦାଧର) ପୁନର୍ବାର ଭୈରବୀ ବ୍ରାହ୍ମଣୀ ଓ ହୃଦୟକୁ ସଙ୍ଗରେ ଘେନି ୧୨୭୪ ସାଲରେ ଦକ୍ଷିଣେଶ୍ୱରରୁ ଯେତେବେଳେ କାମାରପୁକୁର ଆସନ୍ତି ସେତେବେଳେ ଶ୍ରୀ ସାରଦାଙ୍କ ବୟସ ୧୪ ହେବ । ସେତେବେଳେ ଅମ୍ବୀୟା ରମଣୀମାନେ ଜୟ-

ସମବାଟୀରୁ ତାହାଙ୍କୁ ଯେନ ଆସିଲେ । ବାସ୍ତବରେ ଏହାହିଁ ତାହାଙ୍କର ପ୍ରଥମ ପତିଦର୍ଶନ । ଏଥିପୂର୍ବରୁ ତାହାଙ୍କୁ ଯେତେଥର ଦେଖିବାର ସୁଯୋଗ ସେ ପାଇଛନ୍ତି ତାହା ଗଣ୍ୟ ନୁହେଁ । କାରଣ ସେତେବେଳେ ସେ ବାଳିକା ମାତ୍ର ।

ତ୍ୟାଗୀଶ୍ରେଷ୍ଠ ମହାଯୋଗୀ ଶ୍ରୀରାମକୃଷ୍ଣ ଦେବ ସାଂସାରିକ ସମସ୍ତ ବିଷୟରେ ଉଦାସୀନ ଥିଲେହେଁ ଈଶ୍ୱରଙ୍କ ଇଚ୍ଛାରେ ଯେତେବେଳେ ଯେଉଁ କର୍ତ୍ତବ୍ୟଟି ଆସି ପହଞ୍ଚେ ସେତେବେଳେ ସେହି କର୍ତ୍ତବ୍ୟଟି ପାଳନ କରିବାକୁ ସେ ତତ୍ପର ହେଉଥାନ୍ତି । ପତ୍ନୀ ଯେତେବେଳେ ଆପଣା ଇଚ୍ଛାରେ ଆସି ପହଞ୍ଚିଲେ ସେତେବେଳେ ତାହାଙ୍କୁ ସବୁ ବିଷୟରେ ଶିକ୍ଷା ଦେବାରେ ସେ ଅବହେଳା କିମ୍ବା ଉପେକ୍ଷା କଲେ ନାହିଁ । ପ୍ରଥମରେ ସେ ଆଦର ଯତ୍ନ ଦ୍ୱାରା ତାହାଙ୍କର ପ୍ରୀତି ଉତ୍ପାଦନ କରି ନିଜର ତ୍ୟାଗମୟ ଆଦର୍ଶ ଜୀବନରେ ତାହାଙ୍କୁ ଅନୁପ୍ରାଣିତ କରିବାକୁ ଲାଗିଲେ । ସ୍ୱାମୀ ପଉଣାଙ୍କ ସଙ୍ଗରେ କପରି ବ୍ୟବହାର କରିବାକୁ ହେବ, ଶାଶୁ ଶ୍ୱଶୁରଙ୍କର କପରି ସେବା କରିବାକୁ ହେବ, ଗୁରୁ ଦେବତା ଅତିଥିମାନଙ୍କ ସେବାରେ କପରି ଅର୍ଥର ସଦ୍‌ବ୍ୟବହାର ହେବ, ଏ ସମସ୍ତ ତାହାଙ୍କୁ ବୁଝାଇ ତାଙ୍କର ହୃଦୟଙ୍ଗମ କରାଇବାକୁ ସେ ତ୍ରୁଟି କଲେ ନାହିଁ । ଏପରକି ପ୍ରଦୀପର ସଳିତାଟି କପରି ଜାଳିବାକୁ ହୁଏ, କପରି ରଖିବାକୁ ହୁଏ, ଅନ୍ୟ ସ୍ଥାନକୁ ଯିବାବେଳେ ଗାଡ଼ିରେ କିମ୍ବା ଡଙ୍ଗାରେ କୌଣସି ଜିନିଷପତ୍ର ପଡ଼ି ରହିଲା କି ନାହିଁ ଦେଖି ସର୍ବଶେଷରେ ଓହ୍ଲାଇ ଯିବାକୁ ହୁଏ, ପ୍ରଭୃତି ଗୃହସ୍ଥଳୀର ଯାବତୀୟ କର୍ମ ପୁଙ୍ଖାନୁପୁଙ୍ଖରୂପେ ଶିକ୍ଷା ଦେବାକୁ ଲାଗିଲେ ।

ତାହାଛଡ଼ା ସର୍ବୋପରି-ଈଶ୍ୱର ଦର୍ଶନ ଏବଂ ତାହାଙ୍କଠାରେ ଅହୈତୁକୀ ଭକ୍ତି—ମନ-ପ୍ରାଣ ଅର୍ପଣ କରିବା ହିଁ ମାନବ ଜୀବନର ଉଦ୍ଦେଶ୍ୟ ଓ ସବୁଠାରୁ ଶ୍ରେଷ୍ଠ କର୍ତ୍ତବ୍ୟ—ଏ କଥା କହିବାରେ ମଧ୍ୟ ସେ ଅବହେଳା କରି ନ ଥିଲେ । ଯେପରି ସଦ୍‌ଗୁରୁ ଯୋଗ୍ୟ ଶିଷ୍ୟକୁ ସର୍ବବିଷୟରେ ଶିକ୍ଷା ପ୍ରଦାନ କରି ମହତ୍ ଓ ଉନ୍ନତ କରନ୍ତି ସେହିପରି ଶ୍ରୀ ରାମକୃଷ୍ଣ ପ୍ରଥମା ଶିଷ୍ୟାରୂପେ ଆଗତା ଶ୍ରୀ ସାରଦାଙ୍କୁ ସର୍ବଗୁଣାଳଙ୍କୃତା ସର୍ବଗୁଣବିଭୂଷିତା କରିବାକୁ ସଚେଷ୍ଟ ହେଲେ । ଶିଷ୍ୟା ମଧ୍ୟ ତାହାଙ୍କର ପ୍ରତ୍ୟେକ କଥା, ପ୍ରତ୍ୟେକ ଶିକ୍ଷା ଅତି ଶ୍ରଦ୍ଧାର ସହିତ ଗ୍ରହଣ କରି ଜୀବନରେ ପ୍ରତିଫଳିତ କରିବାକୁ ଯତ୍ନରେ ତ୍ରୁଟି କଲେ ନାହିଁ । ଶ୍ରୀ ରାମକୃଷ୍ଣଙ୍କ କଥାରେ ତାହାଙ୍କର ଦ୍ୱିରୁକ୍ତି ନ ଥିଲା, ସନ୍ଦେହ ନ ଥିଲା । ଥିଲା କେବଳ ତାଙ୍କଠାରେ ପୂର୍ଣ୍ଣ ବିଶ୍ୱାସ, କାମଗନ୍ଧହୀନ ଗଭୀର ପ୍ରେମ ଓ ନିଃସ୍ୱାର୍ଥ ଅହୈତୁକୀ ଭକ୍ତି ।

ମହାଯୋଗେଶ୍ୱର ପତିଙ୍କ ଦିବ୍ୟସଙ୍ଗ ଓ ପ୍ରୀତିପୂର୍ଣ୍ଣ ବ୍ୟବହାରରେ ସେ ନିଜକୁ କୃତାର୍ଥ ମନେ କଲେ । ଅଧିକ ସେ ଅନୁଭବ କଲେ ଯେ 'ସତେ କି ଆନନ୍ଦପୂର୍ଣ୍ଣ ଘଟ ହୃଦୟରେ ସର୍ବଦା ସ୍ଥାପିତ ହୋଇଅଛି' । ସେଥର ପତିଙ୍କ ସେବା ଓ ଶିକ୍ଷା କରିବାପାଇଁ ମାତ୍ର କାମାରପୁକୁରରେ ତାହାଙ୍କୁ ଛନିମାସ ସୁଯୋଗ ମିଳିଥିଲା । ଶ୍ରୀ ରାମକୃଷ୍ଣ ଦେବ ଦକ୍ଷିଣେଶ୍ୱରକୁ ଗଲା ଉତ୍ତାରୁ ତାହାଙ୍କ ଦିବ୍ୟସ୍ମୃତି ଦିବ୍ୟ ଆନନ୍ଦ, ଦିବ୍ୟ-ଭାବ ହୃଦୟରେ ଦୃଢ଼ରୂପେ ଧାରଣ କରି ଶ୍ରୀ ସାରଦା ଜୟରାମବାଟୀକୁ ଫେରି ଆସିଲେ । ସେଠାରେ ମାତାଙ୍କ ଗୃହକାର୍ଯ୍ୟରେ ବ୍ୟସ୍ତ ଥିଲେ ମଧ୍ୟ ସେହି ଆନନ୍ଦ-ମୂର୍ତ୍ତି ବିଗ୍ରହ-ସ୍ୱାମୀଙ୍କୁ ସେ ଭୁଲି ପାରିଲେ ନାହିଁ । ଅନୁଦିନ ସେ ତାହାଙ୍କ ଚିନ୍ତାରେ ମଗ୍ନା, ତାହାଙ୍କ ସରଳ-ବ୍ୟବହାରସ୍ମୃତିରେ ମୁଗ୍ଧା । ସେ ତାହାଙ୍କ ଈଶ୍ୱରତ୍ୱ

ଅଲୌକିକ ପ୍ରେମସ୍ରୋତରେ ଅବଗାହନ କରିବାକୁ ଉତ୍କଣ୍ଠିତା । ଶୁଭ ସଂସ୍କାର ଓ ଉଚ୍ଚ ଆଦର୍ଶସମ୍ପନ୍ନ ଯୋଗ୍ୟ ଶିଷ୍ୟ ମହାପୁରୁଷ ସଦ୍‌ଗୁରୁଙ୍କୁ ଲାଭକଲେ ଯେପରି ତାହାର ମନ ଅନୁରାଗରେ ପୂର୍ଣ୍ଣ ହୁଏ, ପୁନଃ ପୁନଃ ଦର୍ଶନ ଲାଳସା ବଢେ, ଅନ୍ତରର ସୁପ୍ତ ଶକ୍ତି ଜାଗ୍ରତ ହୋଇ ଉଠେ, ତାଙ୍କୁ ଦର୍ଶନ ପ୍ରବଳ ବ୍ୟାକୁଳତା ହୃଦୟକୁ ଅଧିକାର କରେ, ଶ୍ରୀ ସାରଦା ଦେବୀଙ୍କର ସେହିପରି ହୋଇଥିଲା । ସବୁବେଳେ ଗୃହକର୍ମରେ ଲିପ୍ତ ଥାଇ ମଧ୍ୟ ସ୍ୱାମୀଙ୍କ ପୁଣ୍ୟ ସ୍ମୃତି ହିଁ ତାଙ୍କ ହୃଦୟରେ ଜାଗ୍ରତ ରହିଲା ।

## ଦକ୍ଷିଣେଶ୍ୱର ଯିବାକୁ ଉତ୍କଣ୍ଠା

ସ୍ୱାମୀଙ୍କ ଅନୁଧ୍ୟାନରେ ଶ୍ରୀ ସାରଦା ତୃପ୍ତି ଓ ଆନନ୍ଦ ଅନୁଭବ କଲେହେଁ ବାହାରର ପାରିପାର୍ଶ୍ୱିକ ଅବସ୍ଥାରେ କେବେ କେବେ ବିଚଳିତ ହେଲେ । ସାହି ପଡ଼ିଶାଠାରୁ ଆରମ୍ଭ କରି ନିଜର ସଙ୍ଗୀ ଖେଳାଳୀ ସ୍ତ୍ରୀ ଲୋକ ପର୍ଯ୍ୟନ୍ତ ଯେତେବେଳେ କହିବାକୁ ଲାଗିଲେ, "ଅହଲୋ, ଏ ପାଗଳର ସ୍ତ୍ରୀ; ଏହାର ସ୍ୱାମୀ ପାଗଳ, ଏହାର ଭାଗ୍ୟ ମନ୍ଦ" ସେତେବେଳେ ଶ୍ରୀ ସାରଦା ଦେବୀଙ୍କ ହୃଦୟ ବିଦୀର୍ଣ୍ଣ ହୋଇଗଲା । ପତିଙ୍କ ନିନ୍ଦା ସତୀଙ୍କ ଅସହ୍ୟ ହେଲା । ଦିନ ପରେ ଦିନ, ମାସ ପରେ ମାସ ସମସ୍ତଙ୍କଠାରୁ ଏହି-ମତି ପତିଙ୍କ ନିନ୍ଦା ଶୁଣି ସେ ଆଉ ଥୟ ଧରି ରହି ପାରିଲେ ନାହିଁ । ନିନ୍ଦା ଶୁଣିଲେ ପୁଣି ସେ କାହାକୁ କଅଣ କହିବେ ! ଅନ୍ତରର ବେଦନା ଅନ୍ତର ଜାଣେ । ସ୍ୱାମୀଙ୍କ ନିନ୍ଦା ଶୁଣିବା ଭୟରେ ସେ ବାହାର ଘରକୁ ଗଲେ ନାହିଁ । ଅନ୍ୟ ସାହି ପଡ଼ିଶାଙ୍କ ସଙ୍ଗରେ କଥାବାର୍ତ୍ତା କରିବା ମଧ୍ୟ ବନ୍ଦ ହେଲା । ଘରର ସବୁକାମ ସାରି

ଏକୁଟିଆ ବସି ବସି ମନରେ ଧନ କଷ୍ଟାଇବାକୁ ଲାଗିଲେ । ସେ ମନେ ମନେ ଭାବିଲେ—"ପ୍ରଥମ ଥର ପତିଙ୍କ ଦର୍ଶନ ବେଳ-ବେଳେ ତାହାଙ୍କର ଦିବ୍ୟ ଆଚରଣ, ଦିବ୍ୟ ଭାବର ପରିଚୟ ପାଇଅଛି । କୌଣସି କାର୍ଯ୍ୟରେ କିମ୍ବା କୌଣସି କର୍ତ୍ତବ୍ୟରେ ତାହାଙ୍କର ଅବହେଳା ଦେଖି ନାହିଁ । ତାହାଙ୍କଠାରୁ ଯେଉଁ ପ୍ରୀତି ଓ ସ୍ନେହ ପାଇଅଛି ତାହା ଜୀବନରେ ଭୁଲି ହେବ ନାହିଁ ।"

ଯାହା ବିଧିର ବିଧାନ ତାହା ଅବଶ୍ୟ ହିଁ ହେବ । ଈଶ୍ୱରହିଁ ଜଗତର ନିୟନ୍ତା ଓ ପାଳକ । ଯେଉଁ ଦେବତା ପ୍ରଥମେ ତାହାଙ୍କ ଦିବ୍ୟସଙ୍ଗ ଲାଭର ଅପୂର୍ବ ସୁଯୋଗ ଦେଇଥିଲେ ସେହି ପୁଣି ସମୟରେ ଦେବେ । ଭଗବାନଙ୍କ ଅଦର୍ଶନରେ ଭକ୍ତର ବିରହାନଳ ବଢ଼େ, ପୁଣି ଦର୍ଶନ ଲାଳସାରେ ସେ ଧନ କଷ୍ଟାଏ, ସେହିପରି ଶ୍ରୀ ସାରଦା ଦେବୀ ଈଶ୍ୱରଙ୍କ ଉପରେ ନିର୍ଭର କରି ମନରେ ଆଶା ବାନ୍ଧି ସେହି ଶୁଭ କାଳର ପ୍ରତୀକ୍ଷାରେ ରହିଲେ । ଦେଖୁଁ ଦେଖୁଁ ଦୀର୍ଘ ଚନୋଟି ବର୍ଷ କଟିଗଲା । ତଥାପି କୌଣସି ସୁଯୋଗ ଆସିଲା ନାହିଁ । ବର୍ତ୍ତମାନ ସେ କିପରି ଅଛନ୍ତି, ତାହାଙ୍କ ସ୍ୱାସ୍ଥ୍ୟ ପୂର୍ବପରି ଅଛି କି ନାହିଁ, ପୂର୍ବ ପରି ମୋ ପ୍ରତି ସ୍ନେହ ପ୍ରୀତି ଅଛି କି ନାହିଁ, —ଏହା ଜାଣିବା ପାଇଁ ଶ୍ରୀ ସାରଦା ବ୍ୟାକୁଳ ହେଲେ । ଲଜ୍ଜାବଶତଃ ମନର କଥା ସେ କାହାକୁ କହି ପାରନ୍ତି ନାହିଁ, କହିଲେ ବୁଝିବ କିଏ ବା ଏହି ଅଭାବ ପୂରଣ କରିବ ? ଦକ୍ଷିଣେଶ୍ୱରକୁ ଯାଇ ସ୍ୱଚକ୍ଷୁରେ ନ ଦେଖିଲେ ହୃଦୟର ଅଶାନ୍ତି କିପରି ମେଣ୍ଟିବ ? ସେଥିପାଇଁ ସେଠାକୁ ଯିବାଲାଗି ସେ ସୁଯୋଗ ଖୋଜିବାକୁ ଲାଗିଲେ । ଈଶ୍ୱରଙ୍କ ଇଚ୍ଛାରେ ସେହି ଶୁଭ ମୁହୂର୍ତ୍ତ ଆସି ପହଞ୍ଚିଲା ।

୧୨୭୮ ସାଲ ଦୋଳ ପୂର୍ଣ୍ଣିମାଦିନରେ ଗଙ୍ଗାସ୍ନାନ କରିବାପାଇଁ ଗ୍ରାମର କେତେକ ରମଣୀ କଲିକତା ଯିବାପାଇଁ ଚାହାନ୍ତିଲେ ।

ପ୍ରେମାବତାର ଶ୍ରୀ ଚୈତନ୍ୟ ମହାପ୍ରଭୁ ସେହି ଦିନ ଜନ୍ମଗ୍ରହଣ କରି ଥିବାରୁ ଦୋଳ ପୂର୍ଣ୍ଣିମା ଗୋଟିଏ ସ୍ମରଣୀୟ ଶୁଭ ଦିନ । ଆତ୍ମୀୟା ରମଣୀମାନଙ୍କର ଗଙ୍ଗା ସ୍ନାନ କରିବା ପାଇଁ କଲିକତା ଯିବା ଦେଖି ଶ୍ରୀ ସାରଦା ତାହାଙ୍କ ସଙ୍ଗରେ ଯିବାକୁ ଆଗ୍ରହ ପ୍ରକାଶ କଲେ । ସେମାନଙ୍କଠାରୁ କନ୍ୟାର ଗଙ୍ଗାସ୍ନାନର ଅଭିଳାଷ ଜାଣି ପିତା ରାମଚନ୍ଦ୍ର ନିଜେ ତାହାଙ୍କୁ ନେଇଯିବାପାଇଁ ସ୍ଥିର କଲେ । ତଦନୁଯାୟୀ ସମସ୍ତେ ମିଶି ଜୟରାମବାଟୀରୁ ପଦବ୍ରଜରେ କଲିକତା ଯିବାର ବ୍ୟବସ୍ଥା ହେଲା ।

ଏଥିପୂର୍ବରୁ ଶ୍ରୀ ସାରଦାଙ୍କର ଏତେ ବାଟଚାଲିବାରେ ଅଭ୍ୟାସ ନ ଥିଲା । ଏତେବେଳେ ସେ ସେହି ପଲ୍ଲୀରେ ବଢ଼ିଥା ଓ ପାଳିତା । ସଙ୍ଗର ରମଣୀମାନେ ଦ୍ରୁତ ପଦରେ ଚାଲି ଯାଉଥାନ୍ତି । କିନ୍ତୁ ଏହି କନ୍ୟା ସେମାନଙ୍କ ସଙ୍ଗରେ ସମାନ ଭାବରେ ଚାଲିବାକୁ ଚେଷ୍ଟା କଲେହେଁ ବିଫଳ ହେଉଥାନ୍ତି । ତାଙ୍କୁ କଷ୍ଟ ହେଲେ ମଧ୍ୟ ଲଜ୍ଜାରେ ସେ କାହାରିକୁ ମୁହଁ ଫିଟାଇ କିଛି କହୁ ନ ଥାନ୍ତି । ଦୁଇ ତିନିଦିନ କ୍ରମାଗତ ଚାଲି ଚାଲି ସେ ଅବସନ୍ନା । ସେ ଆଉ ଚାଲିବାକୁ ଅସମର୍ଥା । ଅତ୍ୟଧିକ ପଥଶ୍ରାନ୍ତା ହେବାରୁ ସେ ଜ୍ୱରରେ ପୀଡ଼ିତା ହୋଇ ପଡ଼ିଲେ । ପିତା ରାମଚନ୍ଦ୍ର କନ୍ୟାର ଜ୍ୱର ହେବା ଜାଣି ତାହାଙ୍କୁ ନେଇ ଗୋଟିଏ ଧର୍ମଶାଳା (ଚଟି)ରେ ଆଶ୍ରୟ ନେଲେ । ସେଠାରେ ପ୍ରବଳ ଜ୍ୱରରେ ଯେତେବେଳେ ସେ ଚୈତନ୍ୟହୀନା, ଯେତେବେଳେ ତାହାଙ୍କର ଅଶେଷ ଯନ୍ତ୍ରଣା ଓ ମନୋବେଦନା, ସେତେବେଳେ ସେ ସେହି ରାତିରେ ଏକ ଅଦ୍ଭୁତ ସ୍ୱପ୍ନ ଦେଖି କଥିତ ଅଶ୍ୱସ୍ତା ହେଲେ । ସ୍ୱପ୍ନ କଥାଟି ସେ ନିଜ ମୁହଁରେ ନିମ୍ନୋକ୍ତ ପ୍ରକାରେ କହୁଥିଲେ—

"ଯେତେବେଳେ ଜ୍ୱରରେ ଚେତାହୀନା ହୋଇ ପଡ଼ିରହିଛି, କୌଣସି ବାହ୍ୟ ଚେତନା ନାହିଁ, ସେତେବେଳେ ମୋ ପାଖରେ ଜଣେ ରମଣୀ ଆସି ବସିଲା—ସେହି ଝିଅଟିର ରଙ୍ଗ କଳା, କିନ୍ତୁ ଏପରି ସୁନ୍ଦର ମନୋହର ରୂପ କେବେହେଲେ ଦେଖିନାହିଁ । ସେ ମୋର ବିଛଣା ପାଖରେ ବସି ମୋ ଦେହ, ମଥା ଅଉଁସି ଦେଲା । ଏପରି କୋମଳ ଥଣ୍ଡା ହାତ ଯେ ଦେହର ସବୁ ଜ୍ୱାଳା ଯନ୍ତ୍ରଣା ଗୁଳି-ଗଲା, ଦେହ ଶୀତଳ ବୋଧ ହେଲା । ମୁଁ ପଚାରିଲି ତୁମ୍ଭେ କେଉଁଠୁ ଆସିଲ ? ଝିଅଟି କହିଲା, ମୁଁ ଦକ୍ଷିଣେଶ୍ୱରରୁ ଆସିଲି । ସେଠାରୁ ଆସିବା ଶୁଣି ଅବାକ୍ ହୋଇ ପଚାରିଲି, ଦକ୍ଷିଣେଶ୍ୱରରୁ ଆସିଛ ? ମୁଁ ମନରେ ଭାବୁଥିଲି ଦକ୍ଷିଣେଶ୍ୱର ଯିବି, ତାହାଙ୍କୁ ଦେଖିବି, ସେବା କରିବି; କିନ୍ତୁ ଏହି ଜ୍ୱର ହେବା ଯୋଗୁଁ ମୋ ଭାଗ୍ୟରେ ସେ ସବୁ ଘଟିଲା ନାହିଁ । ଝିଅଟି ପୁନରାୟ କହିଲା, ହଁ, ହଁ, ତୁମ୍ଭେ ଦକ୍ଷିଣେଶ୍ୱର ନିଶ୍ଚୟ ଯିବ, ଭଲ ହୋଇଯିବ, ତାହାଙ୍କୁ ଦେଖିବ, ସେବା କରିବ, ସେଥିଲାଗି ତାହାଙ୍କୁ ସେଠାରେ ମୁଁ ଅଟକାଇ ରଖିଛି । ମୁଁ କହିଲି ସତ ? ସେଥିଲାଗି ତାହାଙ୍କୁ ଅଟକାଇ ରଖିଛ ? ତୁମ୍ଭେ ମୋର କିଏ ହୁଅ ? ଝିଅଟି କହିଲା, ମୁଁ ତୁମ୍ଭର ଭଉଣୀ ହୁଏ । ମୁଁ କହିଲି ସତେ, ତୁମ୍ଭେ ମୋର ଭଉଣୀ, ସେଥିପାଇଁ ଆସିଛ ।"

ଏହିପରି କଥାବାର୍ତ୍ତା ହେଲା ଉତ୍ତାରୁ ନିଦ ଭାଙ୍ଗିଗଲା । ରାତି ପାହିଗଲା । ଦେଖିଲି ଜ୍ୱର ଛାଡ଼ି ଯାଇଛି । ଦେହ ଟିକିଏ ଭଲ ବୋଧ ହେଉଛି ।

ଦେହର ଦୁର୍ବଳତା ଥିଲେ ମଧ୍ୟ ଦିବ୍ୟ ସ୍ୱପ୍ନ ନିମିତ୍ତ ତାହାଙ୍କର ମନ ଆନନ୍ଦରେ ପୂର୍ଣ୍ଣ । କନ୍ୟାଙ୍କ ସଙ୍ଗରେ ପରାମର୍ଶ କରି ପିତା ରାମଚନ୍ଦ୍ର ତାହାଙ୍କୁ ଘେନି ଧୀରେ ଧୀରେ ଯିବାକୁ ନିଶ୍ଚୟ ମନେ

କଲେ । ଅଳ୍ପ ଦୂର ଯାଇ ନ ଯାଉଣୁ ଗୋଟିଏ ଶିବିକା ମିଳିଲା । ସେ କନ୍ୟାକୁ ତହିଁରେ ବସାଇ ଦେଲେ । ପୂର୍ବଦିନ ପରି ସେଦିନ ପ୍ରବଳ ଜ୍ୱର ଅସିଲା ନାହିଁ, ପିତା ଜାଣି ପାରିଲେ ଉଦ୍ୱିଗ୍ନ ହେବେ ଭାବି ଜ୍ୱର କଥା ସେ କହିଲେ ନାହିଁ । କନ୍ୟାକୁ ସଙ୍ଗରେ ଘେନି ଯେଉଁତେବେଳେ ଶ୍ରୀଯୁକ୍ତ ରାମଚନ୍ଦ୍ର ଦକ୍ଷିଣେଶ୍ୱରରେ ପହଞ୍ଚିଲେ ସେତେବେଳେ ରାତ୍ରି ନଅଟା ହୋଇଥିଲା ।

ଶ୍ରୀ ରାମକୃଷ୍ଣ ଦେବ ତାଙ୍କୁ ଏହିପରି ସହସା ରୋଗାକ୍ରାନ୍ତା ହୋଇ ଅସିବା ଦେଖି ବିଶେଷ ଉଦ୍ୱିଗ୍ନ ହେଲେ । ଥଣ୍ଡାଲଗି ପୁନରାୟ ଜ୍ୱର ଅସି ପାରେ ଭାବି ନିଜ ଗୃହର ଭିନ୍ନ ଶଯ୍ୟାରେ ତାହାଙ୍କ ଶୟନର ବ୍ୟବସ୍ଥା କଲେ ଏବଂ ଦୁଃଖ କରି କହିଲେ—"ତୁମେ ଏତେ ଦିନ ପରେ ଅସିଲ ? ମୋର କି ସେହି *ମଥୁରବାବୁ ଅଛି ଯେ ତୁମର ଯତ୍ନ ହେବ ?" ଔଷଧ ପଥ୍ୟାଦିର ବ୍ୟବସ୍ଥା କରିବା ହେତୁ ଅଳ୍ପ ଦୁଇ ତିନି ଦିନ ମଧ୍ୟରେ ଶ୍ରୀ ସାରଦା ଆରୋଗ୍ୟ ଲାଭ କଲେ । ଆରୋଗ୍ୟ ହେବା ପରେ ନହବତ ଘରେ ଶ୍ରୀ ରାମକୃଷ୍ଣ ଦେବଙ୍କ ଜନନୀ ଚନ୍ଦ୍ରାମଣିଙ୍କ ନିକଟରେ ରହିବାକୁ ତାହାଙ୍କର ବ୍ୟବସ୍ଥା କଲେ । ସେତେବେଳେ ଚନ୍ଦ୍ରାମଣି ଦେବୀ ନହବତର ଉପର କୋଠରୀରେ ଥିଲେ, ଶ୍ରୀ ସାରଦା ତଳ କୋଠରୀରେ ରହିଲେ । ମନ ଉଲ୍ଲାସରେ ଶ୍ରୀ ସାରଦା ନହବତରେ ରହି ଦେବ-ଅକାଙ୍କ୍ଷିତ

---

* ରାଣୀ ରାସମଣିଙ୍କ ଜାମାତା ମଥୁର ମୋହନ ବିଶ୍ୱାସ । ସେ ଶ୍ରୀ ରାମକୃଷ୍ଣ ଦେବଙ୍କୁ ଗୁରୁବତ୍ ଜ୍ଞାନକରି ଶ୍ରଦ୍ଧା ସହିତ ଯେତେବେଳେ ଯାହା ତାଙ୍କର ପ୍ରୟୋଜନ ତଦନୁଯାୟୀ ସେବା କରୁଥାନ୍ତି । ସେ ପ୍ରାୟ ତାହାଙ୍କର ସେବା ଚୌଦବର୍ଷ କାଳ କରିଥିଲେ । ଶ୍ରୀ ଶ୍ରୀ ମାଆ ଦକ୍ଷିଣେଶ୍ୱରକୁ ଅସିବା ବେଳେ ମଥୁର ବାବୁଙ୍କ ସମସ୍ତ ପୂର୍ବ [illegible] ହୋଇଥିଲା । ତେଣୁ ଠାକୁର ଉପରୋକ୍ତ [illegible] ଦୁଃଖ କରି କହିଲେ ।

ପତି-ଦେବତାଙ୍କ ସେବାରେ ଉତ୍ସର୍ଗୀକୃତ ହୋଇ ନିଜକୁ ଧନ୍ୟ ମଣିଲେ । ପୂର୍ବ ପରି ସ୍ନେହ ପ୍ରୀତି ପୂର୍ଣ୍ଣ ଈଶ୍ୱରୀୟ ପ୍ରେମରେ ଅହରହ ମଗ୍ନ ଯୋଗୀ ମହାପୁରୁଷଙ୍କୁ ଦେଖି ତାହାଙ୍କର ଦୁଃଖ ଓ ଅଶାନ୍ତି ଦୂର ହୋଇ ଗଲା । ପିତା ରାମଚନ୍ଦ୍ର କନ୍ୟାର ଆନନ୍ଦରେ ଆନନ୍ଦିତ ହୋଇ ସେଠାରେ ଅଳ୍ପ କେତେ ଦିନ ରହି ନିଜ ଗୃହକୁ ପ୍ରତ୍ୟାବର୍ତ୍ତନ କଲେ ।

## ସେବା ଓ ସାଧନା

ଦକ୍ଷିଣେଶ୍ୱରକୁ ପ୍ରଥମ ଥର ଆସିଲା ବେଳେ *ଶ୍ରୀ ଶ୍ରୀ ମାଆଙ୍କର ଅଷ୍ଟାଦଶ ବର୍ଷ ବୟସ ହୋଇଥିଲା । ୧ ୪ ବର୍ଷ ବୟସରେ କାମାରପୁକୁରରେ ମାତ୍ର ତିନିମାସ ପତିଙ୍କ ସେବା କରିବା ସୁଯୋଗ ସେ ପାଇଥିଲେ । ବର୍ତ୍ତମାନ ତାହାଙ୍କ ଆଗରେ ପୂର୍ଣ୍ଣ ସୁଯୋଗ ଉପସ୍ଥିତ । ତାହାଛଡ଼ା ଦାୟିତ୍ୱଜ୍ଞାନ ବୋଧ କରିବାର ସମୟ ଆଗତ । ସେ ତୀକ୍ଷ୍ଣ ବୁଦ୍ଧି ସମ୍ପନ୍ନା ବିଦ୍ୟାରୂପିଣୀ ଥିଲେ । ତଥାକଥିତ ଶିକ୍ଷା ଲାଭ କରି ନଥିଲେ ହେଁ ତାଙ୍କର ଉପସ୍ଥିତ ବୁଦ୍ଧି ଓ କର୍ତ୍ତବ୍ୟଜ୍ଞାନ ପ୍ରଖର ଥିଲା । "ଯେଠାରେ ଯେପରି ସେଠାରେ ସେପରି, ଯେତେବେଳେ ଯାହା ତେତେବେଳେ ତାହା, ଯାହାକୁ ଯେପରି ତାହାକୁ ସେପରି"— ଆଚରଣ ପ୍ରଦର୍ଶନରେ ସେ ନିପୁଣା ଥିଲେ । ତାଙ୍କର ଶୁଦ୍ଧ ଓ ପବିତ୍ର ସ୍ୱଭାବ ଯୋଗୁଁ ସେ ଠାକୁର [ଶ୍ରୀ ରାମକୃଷ୍ଣ ଦେବ]ଙ୍କ ସଂସର୍ଗରେ ଅତ୍ୟଳ୍ପକାଳ ମଧ୍ୟରେ ସାଧକାଗ୍ରଣୀ ହୋଇ ଉଠିଲେ ।

---

* ଏହିଠାରୁ 'ଶ୍ରୀ ସାରଦା' ସ୍ଥଳେ 'ଶ୍ରୀ ଶ୍ରୀ ମାଆ' ବ୍ୟବହୃତ ହୋଇଅଛି ।

ଠାକୁର ତାହାଙ୍କୁ ସଂସାରର ଯାବତୀୟ ଛୋଟବଡ଼ ବିଷୟ ଠାରୁ ଆରମ୍ଭ କରି ବ୍ରହ୍ମଜ୍ଞାନ ପର୍ଯ୍ୟନ୍ତ ଶିକ୍ଷା ଦେବାରେ ତ୍ରୁଟି କଲେ ନାହିଁ । ଶ୍ରୀ ଶ୍ରୀ ମାଆ ମଧ୍ୟ ସେବା ଓ ଶୁଦ୍ଧ ପ୍ରେମବଳରେ ତାହାଙ୍କୁ ଅପଣାର କରି ପାରିଥିଲେ । ଠାକୁରଙ୍କ ସେବା ଛଡ଼ା ତାଙ୍କର ଅନ୍ୟ କିଛି କାମନା ନଥିଲା । କେବଳ ତାହାଙ୍କ ସେବାରେ ନିଯୁକ୍ତ ହୋଇ ସେ ନିଜକୁ ଧନ୍ୟ ମଣୁଥିଲେ । ଠାକୁର ତାହାଙ୍କୁ ଯେଉଁ ସେବାଟି କରିବାକୁ ସୁଯୋଗ ଦେଉଥାନ୍ତି ସେଥିରେହିଁ ସେ ସନ୍ତୁଷ୍ଟ ରହୁଥିଲେ । କେବେହେଲେ ମୁହିଁ ଫିଟାଇ ଅନ୍ୟ କୌଣସି ବିଷୟରେ ଅଳି କରୁ ନଥିଲେ । * ସକଳରେ ଖୁଆଇବା ପାଇଁ ଆସିଲା ବେଳେ ଠାକୁରଙ୍କୁ ଥରେ ମାତ୍ର ଦର୍ଶନ କରି ସେ ଖୁସି ହେଉଥିଲେ ।

ଶ୍ରୀ ଶ୍ରୀ ମାଆ ଦକ୍ଷିଣେଶ୍ୱରରେ ଯେଉଁ ଘରେ ଥିଲେ ତାହା ଅତି ଛୋଟ, ଗୋଟିଏ କ୍ଷୁଦ୍ର କୋଠରୀ । ସେ ସେହି କ୍ଷୁଦ୍ର ନହବତରେ ବାସ କରୁଥାନ୍ତି । ଘରର ଉତ୍ତର ଦିଗରେ ପଞ୍ଚବଟୀ ଓ ବେଲଗଛ । ପୁଣି ତାହା ଜଙ୍ଗଲାକୀର୍ଣ୍ଣ । ଏହାହିଁ ଠାକୁରଙ୍କର ସାଧନ କ୍ଷେତ୍ର । ନହବତର ଦକ୍ଷିଣ ଦିଗରେ ଠାକୁରଙ୍କ ଘର, ପଶ୍ଚିମ ଦିଗରେ ଗଙ୍ଗା । ଶ୍ରୀ ଶ୍ରୀ ମାଆ ରାତି ତିନିଟାରୁ ଉଠି ଶୌଚାଦି କ୍ରିୟା ଓ ସ୍ନାନ ସମାପନ କରି ଘରେ ପଶୁଥାନ୍ତି । ତହିଁ କେଶ ଶୁଖାଇବାକୁ ମଧ୍ୟ ଟିକିଏ ବାହାରକୁ ଆସୁ ନଥାନ୍ତି, ଏପରି କି ବେଳେ ବେଳେ ବାହ୍ୟ ଶୌଚର ବେଗ ଆସିଲେହେଁ କେହି ଦେଖିବା ଭୟରେ ତାଙ୍କୁ ବେଗ ଧାରଣ କରିବାକୁ ହେଉଥାଏ । ଏହି ବେଗ ଧାରଣ ଫଳରେ

---

* ଦିନବେଳେ ବହୁଶିଷ୍ୟ ସମାଗମ ହେଉଥିବାରୁ ଶ୍ରୀ ଶ୍ରୀ ମାଆ ନହବତରୁ ଠାକୁରଙ୍କ ଗୃହକୁ ଆସିବାର ସୁଯୋଗ ପାଉନଥିଲେ ।

ପରବର୍ତ୍ତୀ ଜୀବନରେ ତାହାଙ୍କୁ ଅନେକ ରୋଗ ଭୋଗିବାକୁ ପଡ଼ିଥିଲା । ଥରେ ଅନ୍ଧକାର ରାତିରେ ଉଠି ଗଙ୍ଗାସ୍ନାନ କରିବାକୁ ଯିବାବେଳେ ତୀରରେ ଶୋଇଥିବା ଗୋଟିଏ କୁମ୍ଭୀର ଉପରେ ତାଙ୍କର ପାଦ ପଡ଼ିଗଲା । ଯାହାହେଉ ଭଗବାନଙ୍କ କୃପାରୁ କୁମ୍ଭୀରଟି ତାଙ୍କର କିଛି କ୍ଷତି କରିନଥିଲା । ଯେତେବେଳେ ସେହି କ୍ଷୁଦ୍ର କୋଠରୀରେ ସେ ବାସ କରୁଥିଲେ କେହି ତାହାଙ୍କ ଛାୟା ପର୍ଯ୍ୟନ୍ତ ଦେଖିବାକୁ ପାଉ ନଥିଲେ । ତାଙ୍କପରି ଏତେ ଲଜ୍ଜାଶୀଳା ସ୍ତ୍ରୀ ଖୁବ କମ ଦେଖାଯାନ୍ତି । ମନ୍ଦିରର କର୍ମଚାରୀଙ୍କ ଭିତରୁ କେହି କେହି ତାହାଙ୍କୁ ଦେଖି ନାହାନ୍ତି । ଖାଜାଞ୍ଚି କହୁଥାନ୍ତି, "ଶୁଣିଛୁ ସେ ଏଠାରେ ଅଛନ୍ତି, କିନ୍ତୁ କେବେହେଲେ ମୁଁ ତାଙ୍କୁ ଦେଖିନାହିଁ ।"

ସେ ଯେଉଁ କୋଠରୀରେ ବାସ କରୁଥିଲେ ତହିଁରେ ଜିନିଷପତ୍ର ଭର୍ତ୍ତି ହୋଇଥିଲା । ଶ୍ରୀ ଶ୍ରୀ ମାଆ ଠାକୁରଙ୍କପାଇଁ ରାନ୍ଧୁଥାନ୍ତି, ରନ୍ଧା ଜିନିଷ ଶିକାରେ ଝୁଲାଇ ରଖୁଥାନ୍ତି । ସେ ଘରଯାକ ଶିକାମୟ ହୋଇଥିବାରୁ ଟିକିଏ ଅସାବଧାନ ହେଲେ ମୁଣ୍ଡ ବାଜେ ।

ଠାକୁରଙ୍କ ପାଖକୁ ଅସଂଖ୍ୟ ଭକ୍ତ ଆସନ୍ତି । କୀର୍ତ୍ତନ, ଈଶ୍ବର ଚର୍ଚ୍ଚା, ଭାବ-ସମାଧି ଏସବୁ ଲାଗି ରହିଥାଏ । କିନ୍ତୁ ଏହି ଚିରଦୁଃଖିନୀ ତପସ୍ୱିନୀ ଘରର ଫାଙ୍କବାଟେ ଏସବୁ ଟିକିଏ ଦେଖିବାକୁ ପାଉଥାନ୍ତି ଏବଂ ଭକ୍ତମାନଙ୍କର ସେହି ଆନନ୍ଦ କୀର୍ତ୍ତନ ଧ୍ୱନି ଶୁଣୁଥାନ୍ତି । ମନରେ କିଛି କ୍ଷୋଭ ନକରି ସେଥିରେହିଁ ସେ ସନ୍ତୁଷ୍ଟ । ସେ ମନେ ମନେ କହୁଥାନ୍ତି — 'ମନ, ତୁ ଏପରି କଅଣ ପୁଣ୍ୟ କରିଛୁ ଯେ ଏସବୁ ଦେଖିବାକୁ ପାଉଛୁ ?' ଭକ୍ତ ଓ ଭକ୍ତିମତୀ ରମଣୀଙ୍କ ଯୋଗୁ ତାହାଙ୍କୁ ଠାକୁରଙ୍କ ଦର୍ଶନ ମଧ୍ୟ ମିଳିଲା ନାହିଁ । ଏପରିକି ମାସେ ଦୁଇ ମାସରେ ସୁଦ୍ଧା ଦର୍ଶନ ଘଟିଲା ନାହିଁ । ରାତିରେ ଖୁଆଇବା

ପାଇଁ ଯାଇ ଥରେ ଯାହା ଦର୍ଶନ ଘଟୁଥିଲା ତାହା ମଧ୍ୟ ଘଟିଲାନାହିଁ । ଭକ୍ତ ରମଣୀମାନେ ଅସି ଖାଇବା ଥାଳିଟି ମଧ୍ୟ ତାଙ୍କ ହାତରୁ ନେଇଗଲେ । ସାତ୍ତ୍ୱ ଧନଗତ ବନ୍ଧବା ବାଢ଼ିବାହୁଁ ତାହାଙ୍କ ମୁଖୀ ଭର୍ଯ ହେଲା ।

କେତେ ବାଳକ ଭକ୍ତ, କେତେ ଗୃହସ୍ଥୀ ଭକ୍ତ ଠାକୁରଙ୍କ ପାଖରେ ରାତରେ ରହୁଥିଲେ । ସେମାନଙ୍କ ପାଇଁ ଅଲଗା ଅଲଗା ରନ୍ଧନ ବନ୍ଦେ । ଠାକୁରେ କହି ପଠାଉଥାନ୍ତି—ଅଜ ଅମୁକ ଲାଗି ରୁଟିଡାଲି ହେବ, ଅମୁକ ପାଇଁ ଖେଚଡ଼ି ହେବ, ଅମୁକ ପାଇଁ ରୁଟି ହେବ — ଇତ୍ୟାଦି

ବସ୍ଥଦ ଅନୁଯାୟୀ ସମସ୍ତଙ୍କ ପାଇଁ ଭିନ୍ନ ଭିନ୍ନ ଜିନିଷ ରାନ୍ଧିବାକୁ ପଡ଼ୁଥିଲା । ସେ ଅତ୍ୟନ୍ତ ସେବାପରାୟଣା ଥିବାରୁ ତାଙ୍କଠାରେ ଧନେ ହେଲେ ବିରକ୍ତିର ଲକ୍ଷଣ ପ୍ରକାଶ ପାଉନଥିଲା । ଠାକୁର ତାହାଙ୍କ ଘରୁ କହୁବା ମାତ୍ରେ ସେ ସବୁ ଶୁଣି ପାରୁଥିଲେ । କୌଣସି ଠାକୁରଙ୍କ ପାଖରୁ ଆସି ମାଆଙ୍କୁ କହିବା ପୂର୍ବରୁ ସେ ସେହି ମୁତାବକ ରନ୍ଧନ ଚୂଲିରେ ବସାଇ ଦେଇଥାନ୍ତି । ନିତ୍ୟ ତିନି ଗୁଣ ସେର ମଇଦାର ରୁଟି ହେଉଥାଏ । ପରେ ତାହାଙ୍କୁ ସାହାଯ୍ୟ କରିବାପାଇଁ ବାଳକ ଲାଟୁ (ସ୍ୱାମୀ ଅଦ୍ଭୁତାନନ୍ଦ),ବଜାର କରିବାପାଇଁ ବୁଢ଼ାଗୋପାଳ (ସ୍ୱାମୀ ଅଦ୍ୱୈତାନନ୍ଦ) ନିଯୁକ୍ତ ହେଲେ ।

ଠାକୁର ଶ୍ରୀ ଶ୍ରୀ ମାଆଙ୍କୁ କହୁଥିଲେ, 'ସ୍ତ୍ରୀ ଲୋକଙ୍କର ବସିରହିବା ଉଚିତ ନୁହେଁ, ସବୁବେଳେ କାର୍ଯ୍ୟରେ ଲାଗିରହିବା ଭଲ । କାର୍ଯ୍ୟ ନ କରି ବସିରହିଲେ ବାଜେ ଚିନ୍ତା ଅସେ ।'

ପରେ ଠାକୁର କେତେ ଗୁଡ଼ାଏ ନୋଟ ଆଣିଦେଇ କହିଲେ, 'ଏଥିରେ ଶିକା ତିଆରି କରିଦିଅ, ଭକ୍ତଙ୍କ ଲାଗି ସନ୍ଦେଶ ଓ ଲୁଚି ରଖିବ ।' ସେଥିରେ ଶିକା ତିଆରି ହେଲା । ନୋଟରୁ ବାହାରିଥିବା ଅଳିଅଗୁଡ଼ାକ ନେଇ ମୁଣ୍ଡଲା ବନାଇ ସେ ମଥାରେ ଦେଲେ ।

ପରବର୍ତ୍ତୀ କାଳରେ ଭକ୍ତଙ୍କ ନିକଟରେ ଶ୍ରୀ ଶ୍ରୀ ମାଆ କହୁଥିଲେ, —"ଯେତେବେଳେ ସେହି ତଳ କୋଠରୀରେ ମାଟିରେ ସପ ବିଛାଇ ନୋଟ ତିଆରି ମୁଣ୍ଡଲା ମଥାରେ ଦେଇ ଶୋଇଥାଏଁ, ସେତେବେଳେ ସେଥିରେହିଁ ଏତେ ନିଦ ହେଉଥାଏ ଯାହା କି ବର୍ତ୍ତମାନ ଖଟ ପଲଙ୍କରେ ଶୋଇ ମଧ୍ୟ ହୁଏ ନାହିଁ—କିମ୍ବା ଉଭୟ ମଧ୍ୟରେ କୌଣସି ଫରକ ଦେଖୁନାହିଁ ।"

ଠାକୁର ପରେ ହୃଦୟ ( ଶ୍ରୀ ରାମକୃଷ୍ଣଦେବଙ୍କ ଭଣଜା )ଙ୍କୁ କହିଲେ, 'ହୃଦୁ ! ମୋର ବଡ଼ ଭାବନା ଥିଲା, ଗାଉଁଲୀ ଝିଅ, ସେ ଏଠାକୁ ଆସିଛନ୍ତି, କେଉଁଠାକୁ ଶୌଚକୁ ଯିବ, ଲୋକମାନେ ନିନ୍ଦା କରିବେ, ସେତେବେଳେ ବଡ଼ ଲଜ୍ଜା ହେବ । କିନ୍ତୁ ସେ ଏପରି ଲଜ୍ଜାଶୀଳା ଯେ କେତେବେଳେ ଉଠେ, ସ୍ନାନ କରେ, କେହି ଦେଖି ବା ଜାଣି ପାରନ୍ତିନାହିଁ । ସେ ବାହାରକୁ ଯିବାର କେବେ ହେଲେ ମୁଁ ଦେଖି ନାହିଁ ।'

ଶ୍ରୀ ଶ୍ରୀ ମାଆ ନିଜ କଥା ବର୍ଣ୍ଣନା କରିବାକୁ ଯାଇ କହି-ଥିଲେ—"ମୁଁ ମଧ୍ୟ ବ୍ୟାକୁଳ ହୋଇ ଜଗଦମ୍ବାଙ୍କୁ ପ୍ରାର୍ଥନା କରିଥିବାରୁ ମାଆ ଜଗଦମ୍ବା ମୋତେ ସର୍ବତୋଭାବରେ ରକ୍ଷା କରିଥିଲେ । ମୋର ପ୍ରାର୍ଥନା ଏପରି ଶୁଣିଥିଲେ ଯେ ତାଙ୍କ ଦୁଇ ହାତରେ ମୋତେ ଘୋଡ଼ାଇ ରଖିଥିଲେ । ଏତେ କାଳ ଏଠେ ଗହଳିରେ

ଏତେ ସମ୍ଭବ କର୍ମଗୃହୀଙ୍କ ମଧ୍ୟରେ ଥାଇ ମଧ୍ୟ କେବେହେଲେ ତାହାର ସାମନାରେ ପଡ଼ନାହିଁ । ଲୋକମାନେ ମୋତେ 'ଭଗବତୀ' କହନ୍ତି—ଏହା ସତ୍ୟ ହେବ ବା !

"ଦକ୍ଷିଣେଶ୍ୱରରେ ମୁଁ ଯେତେବେଳେ ରାତି ତିନିଟା ସମୟରେ ଉଠି ଜପ କରିବାକୁ ବସୁଥାଏ । ଏପରି ଜପରେ ମଗ୍ନ ହେଉଥାଏ ଯେ କୌଣସି ବାହ୍ୟ ଚେତନା ରହୁ ନ ଥାଏ ।

"ଥରେ ଜହ୍ନ ରାତିରେ ନହବତର ସିଢ଼ି ( ପାହାଚ ) ପାଖରେ ବସି ଜପ କରୁଛି, ଗୃହ ଅତି ନୀରବ ନିସ୍ତବ୍ଧ, ଠାକୁର ସେଦିନ ତାଙ୍କ ଘରୁ କେତେବେଳେ ଉଠି ଜଙ୍ଗଲ ଆଡ଼କୁ ଝାଉଁଗଛ ଆଡ଼କୁ ଯାଇଛନ୍ତି କିଛି ଜାଣିପାରି ନାହିଁ । ଅନ୍ୟ ଦିନ ଯିବା ବେଳେ ତାଙ୍କ ଚଟି ଜୋତାର ଶବ୍ଦ ଶୁଣାଯାଇ ଥାଏ । ସେଦିନ ଧ୍ୟାନ ଖୁବ୍ ଲାଗି ଯାଇଛି, କୌଣସି ଚେତା ନାହିଁ । ଯୋଗେନ କୋଲ୍ ପୁଅଟି [ ସ୍ୱାମୀ ଯୋଗାନନ୍ଦ ] ସେଦିନ ଠାକୁରଙ୍କ ଗଡ଼ୁ ଦେବାକୁ ଗଲାବେଳେ ମୋତେ ସେହି ଧ୍ୟାନମଗ୍ନ ଅବସ୍ଥାରେ ଦେଖିଥିଲା । ସେହିଦିନ ଦିନ ଯାଇଛି !

"ଜହ୍ନ ରାତିରେ ଜହ୍ନ ଆଡ଼କୁ ଅନାଇ ହାତ ଯୋଡ଼ି କହୁଥାଏ, ତୁମ୍ଭେ ଜ୍ୟୋତ୍ସ୍ନା ପରି ମୋର ଅନ୍ତର ନିର୍ମଳ କରିଦିଅ । ······ବୃନ୍ଦା ( ପରିଚାରିକା ) ଥରେ ମୋ ସାମନାରେ ଗୋଟିଏ କଂସା ଥାଳି ଗୋଡ଼ରେ ଠେଲି ଦେଲା, ମୋ ବୁକୁ ଭିତରେ ସତେ କି ସେ ବେଦନା ହେଲା ।"

ଶ୍ରୀ ଶ୍ରୀ ମାଆ ନହବତ ଘରେ ଧ୍ୟାନମଗ୍ନା ଥିବାବେଳେ ସେଥି ଶବ୍ଦଟା ବଜ୍ର ପରି ଲାଗିଲା—ସେ କାନ୍ଦ ପକାଇଥିଲେ ।

"ସେତେବେଳେ ମୋ ମନ ଏପରି ଥିଲା ଯେ, ଯେକୌଣସି ବିଷୟରୁ ଈଶ୍ୱରଙ୍କର ଉଦ୍ଦୀପନ ହେଉଥାଏ । ଯଦି ରାତିରେ ଦକ୍ଷିଣେଶ୍ୱରରେ କିଏ ବଂଶୀ ବଜାଉ ଥାଏ, ଶୁଣୁ ଶୁଣୁ ମନ ବ୍ୟାକୁଳ ହୋଇ ଉଠୁଥାଏ, ମନେ ହେଉଥାଏ, ସାକ୍ଷାତ୍ ଶ୍ରୀକୃଷ୍ଣ ବଂଶୀ ବଜାଉଛନ୍ତି—ଏହା ସଙ୍ଗେ ସଙ୍ଗେ ସମାଧି ହେଉଥାଏ ।"

ପୂର୍ବୋକ୍ତ ଶ୍ରୀ ଶ୍ରୀ ମାଆଙ୍କ ଉକ୍ତିରୁ ସ୍ପଷ୍ଟ ବୁଝା ଯାଏ ଯେ ସେ ଯୌବନରେ ଦିନ ରାତି ସେବା ଓ କଠୋର ସାଧନାରେ ବ୍ରତୀ ଥିଲେ । ଏକମାତ୍ର ପରିଚର୍ଯ୍ୟା ଦ୍ୱାରା ଠାକୁରଙ୍କୁ ସନ୍ତୁଷ୍ଟ କରି ଈଶ୍ୱର ଲାଭ କରିବାହିଁ ତାଙ୍କର ଉଦ୍ଦେଶ୍ୟ ଥିଲା । ସେତେବେଳେ ନିଜର ସୁଖ ସ୍ୱାଚ୍ଛନ୍ଦ୍ୟ ପ୍ରତି ନଜର ନ ଥିଲା । ଅନ୍ତରାତ୍ମା ପବିତ୍ର ଶୁଦ୍ଧ ହୋଇ ଗଭୀର ଆଧ୍ୟାତ୍ମିକ ଭୂମିରେ ଅରୂଢ଼ ହେବାପାଇଁ ସେ ସବୁବେଳେ ବ୍ୟାକୁଳ ଥିଲେ । ସେଥିପାଇଁ ତାହାଙ୍କୁ କେତେ ଦିନ ବିନିଦ୍ର ରଜନୀରେ ଧ୍ୟାନ ସମାଧିରେ ଅତିବାହିତ କରିବାକୁ ପଡ଼ୁଛି ।

ଠାକୁର ତାହାଙ୍କୁ ଶିକ୍ଷା ଦୀକ୍ଷା ଦେଇ ଯେ ନିଶ୍ଚିନ୍ତ ଥିଲେ, ତାହା ନୁହେଁ, ଜଗଦମ୍ବାଙ୍କ ନିକଟରେ ମଧ୍ୟ ପ୍ରାର୍ଥନା କରି କହୁଥିଲେ, "ମାଆ, ତାହା ମନରେ ଯେପରି କାମ ଭାବ ନରହେ ।" ବାସ୍ତବିକ ଜଗଦମ୍ବା ତାହାଙ୍କ କଥା ଶୁଣିଥିଲେ । ପରବର୍ତ୍ତୀ କାଳରେ ଠାକୁର ଭକ୍ତମାନଙ୍କ ନିକଟରେ କହୁଥିଲେ, "ମୋର ପ୍ରାର୍ଥନା ଜଗଦମ୍ବା ଶୁଣିଛନ୍ତି । ସେ [ ଶ୍ରୀ ଶ୍ରୀ ମାଆ ] ଏତେ ଭଲ୍ ନ ହେଲେ ମୋର ଭାବ ସମ୍ଭାଳିବା କଠିନ ହୋଇଥାନ୍ତା ।"

ଅଧିକ ଠାକୁର ତାହାଙ୍କୁ ଉପଦେଶ ଦେଇଥିଲେ, "ଜହ୍ନ ମାମୁ ସମସ୍ତଙ୍କ ମାମୁ, ଯେ ଡାକିବ ସେ ପାଇବ । ସାଧନ କରିବାକୁ

ହୁଏ, ଚନ୍ଦନ କାଠ ଘଷିଲେ ଗନ୍ଧ ବାହାରେ, ନ ଘଷିଲେ କେଉଁଠୁ ଆସିବ ?"

ତାହାଙ୍କର ପ୍ରତ୍ୟେକ କଥା ଶ୍ରୀ ଶ୍ରୀ ମାଆଙ୍କ ସ୍ୱଭାବରେ ପରିଣତ ହୋଇଥିଲା । ଏହା ତାହାଙ୍କ ଅଗ୍ରୁର ବ୍ୟବହାରରୁ ସ୍ପଷ୍ଟ ପ୍ରତୀୟମାନ ହେଉଥାଏ । ତାହାଙ୍କ ଶେଷ ଜୀବନ ପର୍ଯ୍ୟନ୍ତ ସେହିପରି ଅବ-ଗୁଣ୍ଠନବତୀ ନକ୍ଷାଶୀଳା ଆଉ ରାତି ତିନିଟାରୁ ଉଠି ଶୌଚାଦି କ୍ରିୟା ସମାପନ କରି ଜପରେ ବସିବା ପ୍ରଭୃତି ଯଥାନିୟମ ପାଳନ କରିବାର ଦେଖା ଯାଉଥିଲା—ଏପରିକ ବିଛଣାରୁ ଉଠିବାକୁ ଅସମର୍ଥା, ବ୍ୟାଧିରେ ଦୁର୍ବଳ ଶରୀର; ତଥାପି ସେ ଜପ ଧ୍ୟାନ କରିବାରେ ଲିପ୍ତ ରହୁଥିଲେ ।

ଶ୍ରୀ ରାମକୃଷ୍ଣ ଦେବ ପରିବ୍ରସ୍ୱଭାବା ଶିଷ୍ୟାଙ୍କୁ ନିକଟରେ ରଖି ଯେ ଶିକ୍ଷା ଦେଉଥିଲେ ତାହା ନୁହେଁ, ସେ କେତେଦୂର ତାହା କାର୍ଯ୍ୟରେ ପାଳନ କରୁଛନ୍ତି ତତ୍ପ୍ରତି ମଧ୍ୟ ତୀକ୍ଷ୍ଣ ଦୃଷ୍ଟି ଦେଉ ଥିଲେ । ତାହାଙ୍କର ଭ୍ରମବଶତଃ ବିପରୀତ ଅନୁଷ୍ଠାନ ଦେଖିଲେ ତାହାଙ୍କୁ ବୁଝାଇ ସଂଶୋଧନ କରୁଥିଲେ । ଶ୍ରୀ ରାମକୃଷ୍ଣ ଦେବଙ୍କ ସାମାନ୍ୟ ବିଷୟରେ ମଧ୍ୟ ଏପରି ଦୃଷ୍ଟି ଥିଲା ଯେ ସେ ତାହାଙ୍କୁ କହିଥିଲେ, "ଗାଡ଼ିରେ ବା ନୌକାରେ ଯିବାବେଳେ ଆଗେ ଯାଇ ଉଠିବ, ଆଉ ଓହ୍ଲାଇବା ବେଳେ କୌଣସି ଜିନିଷ ପଡ଼ି ରହିଲା କି ନାହିଁ ଦେଖି ବୁଝି ଓହ୍ଲାଇବ ।"

ଶ୍ରୀ ରାମକୃଷ୍ଣ ଦେବ ରାତ ଦିନ ଈଶ୍ୱର ପ୍ରସଙ୍ଗରେ ତନ୍ମୟ ଥିଲେ ହେଁ ଶ୍ରୀ ଶ୍ରୀ ମାଆଙ୍କ ସ୍ୱାସ୍ଥ୍ୟ ସମ୍ବନ୍ଧରେ ଉଦାସୀନ ନଥିଲେ । ସେ ଜାଣିଥିଲେ ଯେ ରାତି ତିନିଟାରୁ ଉଠି ଶୌଚ ସ୍ନାନ ସାରି

ଘରେ ପଶି ଅଉ ବାହାରକୁ ଆସିବାକୁ ସୁଯୋଗ ନ ପାଇଲେ ଦେହ ଖରାପ ହେବ । ସେଥିଲାଗି ବୁଲାଚଲା କରିବା ପାଇଁ ତାଙ୍କୁ ଉପଦେଶ ଦେଇଥିଲେ । ଯେପରି ଲୋକ ଦେଖି ନ ପାରନ୍ତି ସେହିପରି ସମୟରେ ନହବତଖାନା ପଛଆଡ଼କୁ ବୁଲିଯିବାକୁ ବ୍ୟବସ୍ଥା କରିଥାନ୍ତି । ଦ୍ୱିପ୍ରହରରେ ଘାଟର ବାଟରେ ଯାଇ ସନ୍ଧ୍ୟାପର୍ଯ୍ୟନ୍ତ ସେଠାରେ ରହି ଅରତି ସମୟରେ ମାଆ ଫେରି ଆସୁଥିଲେ । କାରଣ ସେତେବେଳେ ନିର୍ଜନ ଥାଏ, ଲୋକମାନେ ଅରତିରେ ବ୍ୟସ୍ତ ଥାଆନ୍ତି ।

ଶ୍ରୀ ରାମକୃଷ୍ଣ ଦେବ ସର୍ବଦା ଭାବ ସମାଧିରେ ମଗ୍ନ, କେତେ-ବେଳେ ବା ବାହ୍ୟ ଚେତନା ଲୁପ୍ତ, ଦେହ ଅଛି କି ନାହିଁ ବୋଧଶୂନ୍ୟ,—ଏହିପରି ଯୋଗୀ ପୁରୁଷଙ୍କ ପକ୍ଷରେ ଦେହରକ୍ଷା କରିବା କଠିନ । ତାହାଙ୍କ ଦେହର ଯତ୍ନ ଯେପରି ସୁଚାରୁରୂପେ ନିଆଯାଏ ସେଥିଲାଗି ଶ୍ରୀ ଶ୍ରୀ ମାଆ ମଧ୍ୟ ବ୍ୟସ୍ତ । ଠାକୁର ବରାବର ପେଟରୋଗୀ ଥିଲେ । କୌଣସି ପାକ ଦ୍ରବ୍ୟ ତାହାଙ୍କର ହଜମ ହେଉ ନଥିଲା । ତାହାଙ୍କ ଦେହର ଅବସ୍ଥାନୁସାରେ ଶ୍ରୀ ଶ୍ରୀ ମାଆ ରୁଚିକର ଓ ପୁଷ୍ଟିକର ଖାଦ୍ୟ ରାନ୍ଧିକରି ଦେଉଥାନ୍ତି । କିପରି ଶ୍ରୀ ଶ୍ରୀ ଠାକୁରଙ୍କୁ ସେବାଦ୍ୱାରା ସନ୍ତୁଷ୍ଟ କରିବାକୁ ହୁଏ ତାହା ଏକମାତ୍ର ସେ ଜାଣିଥିଲେ । ତାହାଙ୍କ ଅବସ୍ଥା ଜାଣି ତଦନୁରୂପ ବ୍ୟବସ୍ଥା କରିବା ବିଷୟରେ ଶ୍ରୀ ଶ୍ରୀ ମାଆଙ୍କ ପରି ଆଉ କେହି ଥିଲେ କି ନାହିଁ ସନ୍ଦେହ ।

ଶ୍ରୀ ଶ୍ରୀ ଠାକୁରଙ୍କର ଶିଶୁସୁଲଭ ଭାବ । ଅନେକ ସମୟରେ ବାଳକ ପରି ତାହାଙ୍କୁ ଭୁଲାଇ ଆହାର କରାଇବାକୁ ପଡ଼ୁଥାଏ । ସେ ସମ୍ବନ୍ଧରେ ମାଆ କହୁଥିଲେ----"ଠାକୁରଙ୍କ ଥାଳିରେ ଭାତ

ବାଢ଼ିବା ସମୟରେ ଦୁଇ ହାତରେ ଚିପି ଚିପି କମ ଦେଖାଇଲା ଭଳି କରୁଥାଏ । ଠାକୁର ବେଶୀ ଭାତ ଦେଖିଲେ ଭୟ ପାଉଥାନ୍ତି । ଅଧସେରର ଦୁଧର ବ୍ୟବସ୍ଥା ଥିଲା । ଗୋପାଳଙ୍କ ଠାରୁ ବେଶୀ ଦୁଧ ନେଇ ଫୁଟାଇ ଫୁଟାଇ ଘନ କରି ବାଟିଅରେ ଦେଉଥାଏ । ଦିନେ ଜଣେ ଭକ୍ତ ରମଣୀ ଠାକୁରଙ୍କ ପାଖରେ ସବୁ ଫିଟାଇ କହିଦେଲେ । ସେଦିନ ଠାକୁର ଏକାବେଳକେ ଭୟ ପାଇଗଲେ ଏବଂ ସେଦିନ ମୋତେ ଡାକି କହିଲେ, 'ତୁମେ ଏତେ ଦୁଧ ଦେଉଛ, ତେଣୁ ମୋ ପେଟ ବେମାର ହେଉଛି ।' ଏହା କହି ଦେବାରୁ ସତକୁ ସତ ତାହାଙ୍କର ସେଦିନ ଦୁଇ ତିନି ବାର ଝାଡ଼ା ହେଲା । "ମୁଁ କହିଲି, 'କିଏ କହୁଛି ଯେ ବେଶୀ ଦୁଧ ଦେଉଛି, ସେ କଅଣ ଜାଣେ ?' ତହୁଁ ସେ ଅଣ୍ଡୁସ୍ତ ହେଲେ । ଭଗବାନଙ୍କ ସେବାଲାଗି ମିଥ୍ୟା କହିବାରେ ଦୋଷ ନାହିଁ ।"

ଉଭୟଙ୍କ ମଧ୍ୟରେ ଏହିପରି କାମଗନ୍ଧହୀନ ନିଷ୍କାମ ପ୍ରୀତି ଥିଲା । ଏପରି କାମଗନ୍ଧହୀନ ପ୍ରୀତିପୂର୍ଣ୍ଣ ଦାମ୍ପତ୍ୟ ପ୍ରେମ ସଂସାରରେ ବିରଳ । ଏଥିରେ କୌଣସି ଆଡ଼ମ୍ବର ନାହିଁ, ଏହା ସହଜ ସରଳ ଭାବ ପୂର୍ଣ୍ଣ । ଏଥିରେ ବିନ୍ଦୁମାତ୍ର ଅସ୍ୱାଭାବିକତା ନାହିଁ କିମ୍ବା ଏହା ଅତିରଞ୍ଜିତ ନୁହେ । ଏହା କି ସେହି ପ୍ରାଚୀନ ସତୀ ସାଧ୍ୱୀ ମହୀୟସୀ ମହିଳାମାନଙ୍କ ସ୍ୱର୍ଗୀୟ ଅନାବିଳ ଦାମ୍ପତ୍ୟ ପ୍ରୀତିକୁ ସ୍ମରଣ କରାଇ ଦିଏ ନା ?

ଶ୍ରୀ ଶ୍ରୀ ମାଆ ଯେପରି ତାହାଙ୍କୁ ଉପାସନା କରୁଥାନ୍ତି, ଠାକୁର ମଧ୍ୟ ତାହାଙ୍କୁ ଜଗଜ୍ଜନନୀର ଅଂଶ ଭାବି ଶ୍ରଦ୍ଧା ପ୍ରଦର୍ଶନ କରୁଥାନ୍ତି । ବେଳେବେଳେ ତାହାଙ୍କର ଏପରି ଶ୍ରଦ୍ଧାର ଅଭିବ୍ୟକ୍ତି ହେଉଥାଏ, ଯାହାର ଦୃଷ୍ଟାନ୍ତ ଇତିହାସରେ ଦୁର୍ଲଭ ଅଟେ । ଦିନେ ଦକ୍ଷିଣେଶ୍ୱର

ଦେବ ମନ୍ଦିରରେ ଆରତି ଶେଷ ହେବା ପରେ ଶ୍ରୀ ଶ୍ରୀ ମାଆ ଠାକୁରଙ୍କ ଜଳଖିଆ ଥାଳି ରଖିବାକୁ ଯିବାବେଳେ ଠାକୁର ଖଟ ଉପରେ ଅର୍ଦ୍ଧ ନିଦ୍ରିତ ଅବସ୍ଥାରେ ଆଖି ବୁଜି ଶୋଇଥିଲେ । ଶ୍ରୀମତୀ *ଲକ୍ଷ୍ମୀ ଦେବୀ ଜଳଖିଆ ରଖିଗଲେ ବୋଲି ମନେ କରି ଠାକୁରେ କହିଲେ, 'କବାଟଟା ଅଉଜାଇ ଦେଇ ଯାଅ' । ସେଥିରେ ମାଆ କହିଲେ, "ଅଚ୍ଛା ହଉ କବାଟ ଅଉଜାଇ ଦେଲି ।" ମାଆଙ୍କ ଗଳାର ସ୍ୱର ବାରି ପାରି ଠାକୁର ଅତି ନମ୍ର ଭାବରେ କହିଲେ, "ଆହା ତୁମେ ! ମୁଁ ଭାବିଥିଲି ଲକ୍ଷ୍ମୀ । ତୁମେ କିଛି ମନେ କରିବ ନାହିଁ ।" 'ଦେଇଯାଅ' ନକହି 'ଦେଇଯାଅ' କହି ପକାଇ ଥିଲେ ବୋଲି ଠାକୁରଙ୍କ ଏତେ ଅନୁଶୋଚନା ହୋଇଥିଲା ଯେ ତହିଁ ଆରଦିନ ସକାଳେ ପୁଣି ମାଆଙ୍କ ନିକଟରେ ତାହା ଅଭିବ୍ୟକ୍ତ କଲେ ।

ଆଉଦିନେ ଠାକୁର ରଖିଥିବା କେତେଗୁଡ଼ିଏ ଫଳ ମିଷ୍ଟାନ୍ନ ଅନ୍ୟ ଲୋକମାନଙ୍କୁ ମାଆ ବିତରଣ କରି ଦେଇଥିଲେ । ସେଥିଲାଗି ଠାକୁର ଟିକିଏ ଅସନ୍ତୋଷ ଭାବ ପ୍ରକାଶ କରି କହିଲେ, 'ଏତେ ଖରଚ କଲେ ଚଳିବ କିପରି ?' ସେଥିରେ ମାଆ ଟିକିଏ ଅଭିମାନ ଦେଖାଇ ସେଠାରୁ ଚାଲି ଆସିବାରୁ ଠାକୁର ତାହା ବୁଝି ପାରି ଅତି ବ୍ୟସ୍ତତା ସହିତ ଭ୍ରାତୃଷ୍ପୁତ୍ର ରାମଲାଲଙ୍କୁ ଡାକି କହିଲେ, "ଅରେ, ତୁମ ଖୁଡ଼ୀଙ୍କୁ ଯାଇ ଶାନ୍ତ କର, ସେ ଚିଡ଼ିଲେ ମୋର ସବୁ ନଷ୍ଟ ହୋଇଯିବ ।"

ମିଷ୍ଟାନ୍ନାଦି ଖାଦ୍ୟ ସାମଗ୍ରୀ ବିତରଣ କରିଦେବା ଶ୍ରୀ ଶ୍ରୀ ମାଆଙ୍କ ସ୍ୱଭାବ ଥିଲା । କିନ୍ତୁ ସେଥିଲାଗି କୌଣସି ଜିନିଷର ଅଭାବ ହେଉ ନଥାଏ, ସଙ୍ଗେ ସଙ୍ଗେ ପୁଣି କେଉଁଠୁ ଆସିଯାଉଥାଏ ।

* ଶ୍ରୀଯୁକ୍ତ ରାମେଶ୍ୱରଙ୍କ କନ୍ୟା ଠାକୁରଙ୍କ ଭ୍ରାତୃଷ୍ପୁତ୍ରୀ ।

ଅଉଦିନେ ଠାକୁରଙ୍କ ଖାଇବା ସେଦିନ କିପରି ସେ ବିପଦରେ ପଡ଼ିଥିଲେ ତାହା ମାଆ ନିଜ ମୁହଁରେ କହୁଥିଲେ—"ରାତିରେ ଠାକୁରଙ୍କ ଖାଇବା ସମୟରେ ଭକ୍ତମାନେ ଚାଲି ଯାଇଥିଲେ । ସେତେବେଳେ ମୁଁ ତାହାଙ୍କ ଖାଇବା ଜିନିଷ ଥାଳିରେ ନେଇ ଯାଉଥାଏଁ ଏବଂ ଖାଇବା ଶେଷ ନ ହେବାଯାଏ ବସି ରହୁ ଥାଏଁ । ଦିନେ ଠାକୁରଙ୍କଲାଗି ଆସନ ହୋଇଛି, ମୁଁ ନହବତରୁ ଥାଳି ହାତରେ ଧରି ଯିବାବେଳେ କେଉଁଠୁ ଜଣେ ସ୍ତ୍ରୀ ଭକ୍ତ ଆସି ଅତି ବ୍ୟସ୍ତରେ କହିଲା, 'ମାଆ' ମୋତେ ସେହି ଥାଳିଟି ଦିଅ, ମୁଁ ତାହାଙ୍କୁ ଦେଇ ଆସିବି' ଏହା କହି ମୋ ହାତରୁ ଥାଳିଟି ନେଇ ଠାକୁରଙ୍କୁ ଦେଇ ଆସିଲା । ମୁଁ ତାହାଙ୍କ ଖାଇବାଠାରେ ବସିରହିଲି । କିନ୍ତୁ ଠାକୁର ଆସନରେ ବସି ଅନ୍ନ ଖାଇପାରିଲେ ନାହିଁ, କିମ୍ବା ତାଙ୍କ ହାତ ମୁହଁକୁ ଉଠିଲା ନାହିଁ । ତେତେବେଳେ ମୋତେ କହିଲେ, 'ତୁମ୍ଭେ କଅଣ କଲ ? ତୁମ୍ଭେ ନ ଆଣି ତାହା ହାତରେ ପଠାଇଲ; ଜାଣନାହିଁ ତାହାର ସ୍ୱଭାବ ? ସେ ଅମୁକ ଦିଅର ସଙ୍ଗେ ଥାଏ ।' ମୁଁ ଅତ୍ୟନ୍ତ କାକୁତି ମିନତି କରି କହିଲି, 'ଆଜି ଖାଇ ନିଅନ୍ତୁ ।' ତଥାପି ସେ କହିଲେ—'ମୁଁ ଯେ ଖାଇ ପାରୁନାହିଁ' । ବାରମ୍ବାର ଅନୁରୋଧ କରିବାରୁ ଠାକୁର କହିଲେ, 'ମୋର ଖାଇବା ଥାଳି ଆଉ କାହାର ହାତରେ ଦେବନାହିଁ ?' ସେଥିରେ କହିଲି, 'କେହି ମାଆ ବୋଲି ଅନୁରୋଧ କରି କହିଲେ, କଅଣ କହିବି ! ତେବେ ଚେଷ୍ଟା କରିବି' ।"

ସମସ୍ତଙ୍କ ପ୍ରତି ଶ୍ରୀ ଶ୍ରୀ ମାଆଙ୍କର ଉଦାରତା, କରୁଣା ଓ ସହାନୁଭୂତି ଯେ ଥିଲା ଏଥିରୁ ସହଜରେ ଜଣାଯାଏ । ତାହା ଛଡ଼ା ଠାକୁରଙ୍କ ସେବାରେ ଯେପରି ସେ କ୍ଷିପ୍ର ଓ ସିଦ୍ଧହସ୍ତା ସେହିପରି ତାହାଙ୍କ ଇଙ୍ଗିତ ବୁଝି ସମସ୍ୟା ସମାଧାନ କରିବାରେ ମଧ୍ୟ ପାର-

ଦର୍ଶିନୀ ଥିଲେ । ବେଳେ ବେଳେ ତାହାଙ୍କ ଅସାଧାରଣ ବିବେଚନା ଶକ୍ତିର ପରିଚୟ ମିଳେ । ଏପରି କି ଠାକୁର ତାହାଙ୍କର ବୁଦ୍ଧିମତ୍ତା ଦେଖି ପ୍ରଶଂସା କରୁଥାନ୍ତି ଏବଂ ବେଳେ ବେଳେ ବାଳକପରି ତାହାଙ୍କ ପରାମର୍ଶ ନେଉଥାନ୍ତି । ନିମ୍ନୋକ୍ତ ଦୁଇଟି ଘଟଣାରୁ ତାହା ସ୍ପଷ୍ଟ ହେବ—

ଦକ୍ଷିଣେଶ୍ୱର ଠାରୁ ପାଣିହାଟି ପାଞ୍ଚ କିମ୍ବା ଛଅ ମାଇଲ । ସେଠାରେ ଶ୍ରୀ ନିତ୍ୟାନନ୍ଦ ଓ ଶ୍ରୀ ଚୈତନ୍ୟ ମହାପ୍ରଭୁ ଆସି ଭକ୍ତମାନଙ୍କୁ କୃତାର୍ଥ କରିଥିଲେ । ଶ୍ରୀ ନିତ୍ୟାନନ୍ଦ ପ୍ରଭୁ ଶ୍ରୀ ରଘୁନାଥ ଦାସଙ୍କୁ ଥରେ କହିଥିଲେ, "ଅରେ ଚୋର । ତୁ ଛପି ଛପି ଆସି ଚୋରି କରି ପ୍ରେମ ଆସ୍ୱାଦନ କରିଯାଉ, ଆଜି ତୋତେ ଦଣ୍ଡ ଦେବି, ତୁ ଚୁଡ଼ା କଦଳୀ ଚକଟା କରି ଭକ୍ତମାନଙ୍କୁ ପରିତୋଷ କରି ଭୋଜନ କରାଇ ଦେ ।"

ଏହି ଘଟଣା ଜ୍ୟୈଷ୍ଠ ମାସ ଶୁକ୍ଳା ତ୍ରୟୋଦଶୀ ତିଥିରେ ଘଟି-ଥିବାରୁ ବୈଷ୍ଣବମାନେ ସେହି ଲୀଳା ସ୍ମରଣ କରିବା ଲାଗି ପ୍ରତିବର୍ଷ ସେହି ତିଥିରେ ମହୋତ୍ସବ କରିଥାନ୍ତି । ଶ୍ରୀ ରାମକୃଷ୍ଣ ଦେବ ସେହି ମହୋତ୍ସବ ଉପଲକ୍ଷରେ ଭକ୍ତମାନଙ୍କୁ ଘେନି ଅନେକ ଥର ଯାଇଛନ୍ତି କିନ୍ତୁ ଏଥର ମାସକ ପୂର୍ବରୁ ଥଣ୍ଡା ଲାଗି ତାହାଙ୍କ ଗଳା ଦରଜ ହେବାରୁ ଯିବାଲାଗି ଦୋ ଦୋ ମାଞ୍ଚ ହେଲେ । ଭକ୍ତମାନଙ୍କ ମଧ୍ୟରୁ କେହି କେହି ଆନନ୍ଦରେ ଉଲ୍ଲସିତ ହେଲେ, କେହି ବା ସେଠାକୁ ଗଲେ ଠାକୁରଙ୍କର ଭାବ ସମାଧି ଅଧିକ ହୋଇ ଗଳାର ବେଦନା ବଢ଼ିବ ବୋଲି ଆଶଙ୍କା କଲେ । ଅବଶେଷରେ ଠାକୁରଙ୍କ ଆଗ୍ରହାତିଶଯ୍ୟରୁ ଯିବା ସ୍ଥିର ହେଲା । ଅନେକ ସ୍ତ୍ରୀ ଓ ପୁରୁଷ ଭକ୍ତ ଠାକୁରଙ୍କ ସଙ୍ଗରେ ଯିବାକୁ ଆଗ୍ରହ ପ୍ରକାଶ କରିବାରୁ ତିନିଗୋଟି ଡଙ୍ଗା ଭଡ଼ା କରିବାକୁ ପଡ଼ିଲା ଏବଂ ବେଳ ଦଶଟା ମଧ୍ୟରେ ଭୋଜନ ସାରି ସମସ୍ତେ ଯିବାକୁ

ପ୍ରସ୍ତୁତ ହେଲେ । ଭକ୍ତ ରମଣୀମାନେ ସେଠାକୁ ଯାଉଛନ୍ତି ଜାଣି ଶ୍ରୀ ଶ୍ରୀ ମାଆ ସେମାନଙ୍କ ସଙ୍ଗରେ ଯିବେ କି ନାହିଁ ଠାକୁରଙ୍କ ଅନୁମତି ନେଇବାପାଇଁ ଜଣେ ଭକ୍ତାଙ୍କୁ ତାହାଙ୍କ ନିକଟକୁ ପଠାଇଲେ । ସେହି ଭକ୍ତାଟିକୁ ଠାକୁର କହିଲେ, "ତୁମ୍ଭେମାନେ ଯାଉଛ, ଯଦି ତାହାର ଇଚ୍ଛା ହୁଏ ସେ ଯାଉ ।" "ତାହାର ଇଚ୍ଛା ହେଲେ ସେ ଯାଉ" ଏହା ଶୁଣି ମାଆ ବୁଝିଲେ ଠାକୁର ତାଙ୍କୁ ଯିବାପାଇଁ ଖୁସିମନରେ ଅନୁମତି ଦେଉ ନାହାନ୍ତି; ତେଣୁ ସେମାନଙ୍କ ସଙ୍ଗରେ ଯିବାର ସଂକଳ୍ପ ସେ ତ୍ୟାଗକଲେ ।

ଠାକୁରେ ଯଦି, "ହଁ ତୁମ୍ଭମାନଙ୍କ ସଙ୍ଗରେ ଯିବ"—ଏହିପରି କହିଥାନ୍ତେ, ତାହେଲେ ଆନ୍ତରିକତା ସହିତ ଯିବାକୁ ଅନୁମତି ଦେଉଛନ୍ତି—ଏହା ବୁଝା ଯାଇଥାନ୍ତା । ସେଥିଲାଗି ଶ୍ରୀ ଶ୍ରୀ ମାଆଙ୍କ ପ୍ରବଳ ଇଚ୍ଛା ଥିଲେ ମଧ୍ୟ ସେଥିରୁ ସେ ନିବୃତ୍ତ ହେଲେ । ଠାକୁରେ ସେଠାରେ ମହୋତ୍ସବ ଦର୍ଶନ କରି ଦକ୍ଷିଣେଶ୍ୱର ଫେରିବାକୁ ରାତି ପ୍ରାୟ ଆଠଟା ହୋଇଥିଲା । ତା ପରେ ଖାଇବା ବେଳେ ଠାକୁର ଉତ୍ସବ ବୃତ୍ତାନ୍ତ ପ୍ରସଙ୍ଗରେ ଜଣେ ସ୍ତ୍ରୀ ଭକ୍ତଙ୍କୁ କହିଲେ, "ସେଠାରେ ଭାରି ଲୋକ ଭିଡ଼, ପୁଣି ଅନବରତ ମୋର ଭାବ-ସମାଧି ହେବା ଦେଖି ମୋ ପ୍ରତି ସମସ୍ତଙ୍କର ଲକ୍ଷ୍ୟ; ତେଣୁ ସେ (ଶ୍ରୀ ଶ୍ରୀ ମାଆ) ସେଠାକୁ ନ ଯାଇ ଭଲ କରିଛି । ତାହାକୁ ସଙ୍ଗରେ ଦେଖିଲେ ଲୋକମାନେ କହିଥାନ୍ତେ ହଂସ, ହଂସୀ ଆସିଛନ୍ତି । ସେ ଖୁବ୍ ବୁଦ୍ଧିମତୀ ।"

ସେବାଦ୍ୱାରା ଯେ କେବଳ ସେ ଠାକୁରଙ୍କ ପ୍ରୀତି ଉତ୍ପାଦନ କରିବାକୁ ସକ୍ଷମ ହୋଇଥିଲେ ତାହା ନୁହେଁ, ପରନ୍ତୁ ତାହାଙ୍କର ନମ୍ରତା, ଲଜ୍ଜାଶୀଳତା, ନିରହଙ୍କାରିତା, ଲୋଭଶୂନ୍ୟତା, ସହନଶୀଳତା ଓ ତ୍ୟାଗ, ସଂଯମ ଯୋଗୁଁ ସେ ଠାକୁରଙ୍କ ପ୍ରିୟ ହୋଇଥିଲେ ।

ଯାଜ୍ଞବଲ୍କ୍ୟ ତାହାଙ୍କ ପତ୍ନୀ ମୈତ୍ରେୟୀଙ୍କୁ କହୁଥିଲେ, "ପ୍ରିୟେ ! ତୁମ୍ଭେ ଆଗରୁ ମୋର ପ୍ରିୟ ଥିଲ, ବର୍ତ୍ତମାନ ତୁମ୍ଭର ଅମୃତତ୍ତ୍ୱ ଲାଭର ଏକାନ୍ତ ଅଭିଳାଷ ଅଛି ଜାଣି ପ୍ରିୟତମ ହେଲ ।" ଶ୍ରୀ ଶ୍ରୀ ମାଆ ନିରକ୍ଷର ପଲ୍ଲୀ ରମଣୀ, ଦରିଦ୍ର ବ୍ରାହ୍ମଣର କନ୍ୟା । ତଥାକଥିତ ଶିକ୍ଷା ତାଙ୍କର ଆଦୌ ନାହିଁ, ଅଥଚ ତାହାଙ୍କର ଶୁଦ୍ଧ ପବିତ୍ରଭାବ, ତୀକ୍ଷ୍ଣ ବୁଦ୍ଧି, ଉପସ୍ଥିତ କର୍ତ୍ତବ୍ୟ ବୁଦ୍ଧି, ଏସବୁ ଥିଲା ଯାହାର ତୁଳନା ନାହିଁ ।

ଥରେ ମାରୁଆଡ଼ ଭକ୍ତ (ଲକ୍ଷ୍ମୀନାରାୟଣ) ଦକ୍ଷିଣେଶ୍ୱର ଆସି ଠାକୁରଙ୍କ ସେବା ଯେପରି ସୁଚାରୁରୂପେ ଚଳେ ତାହାର ବ୍ୟବସ୍ଥା କରିବା ପାଇଁ ଠାକୁରଙ୍କୁ କହିଲେ—"ଦଶ ହଜାର ଟଙ୍କା ଦେଉଛି, ଏହି କୋମ୍ପାନୀ କାଗଜର ସୁଧରୁ ଆପଣଙ୍କର ସବୁ ଭଲ ଭାବରେ ଚାଲିବ । ଆଉ କି ଅଭାବ ରହିବ ନାହିଁ ।" ଏହି ଦଶ ହଜାର ଟଙ୍କା କଥା ଶୁଣିବା ମାତ୍ରେ ଶ୍ରୀ ରାମକୃଷ୍ଣ ଦେବ ଅଜ୍ଞାନ ହୋଇ ପଡ଼ିଗଲେ,—ମନେ ହେଲା ସତେ ଯେପରି କିଏ ମୁଣ୍ଡଟା କାଟିଦେଲା । ଚେତା ଆସିଲା ପରେ କିଛି ଏ ଦାମ୍ଭ ଧରି ମାରୁଆଡ଼ିଙ୍କୁ ସେ କହିଲେ, "ଦେଖ, ଆଉ ଏକବେହେଲେ ଟଙ୍କା କଥା ମୁହଁରେ ଧରିବ ନାହିଁ । ତାହା ହେଲେ ମୋର ଅନିଷ୍ଟ ହେବ ।" ସେତେବେଳେ ମାରୁଆଡ଼ କହିଲେ, 'ଆପଣ ନ ରଖନ୍ତୁ, 'ଅତ ଜଣେ ଏହା ରଖନ୍ତୁ ।' ସେହି ସମୟରେ ଠାକୁର ଶ୍ରୀ ଶ୍ରୀ ମାଆଙ୍କ ମନୋଭାବ ବୁଝିବା ପାଇଁ ତାହାଙ୍କୁ ଡକାଇ କହିଲେ, "ଏ ଟଙ୍କା ଦେବାକୁ ଚାହୁଁଛି, ତୁମ୍ଭେ ଏହି ଟଙ୍କା ଗ୍ରହଣ କରିବ ?" ଶ୍ରୀ ଶ୍ରୀ ମାଆ ଶୁଣିବା ମାତ୍ରେ କାଳ ବିଳମ୍ବ ନ କରି ଉତ୍ତର କଲେ, "ନାଁ, ସେ ଟଙ୍କା କିପରି ନେବି ? ମୁଁ ତାହା ଗ୍ରହଣ କରି ପାରିବ ନାହିଁ, ଯେହେତୁ ମୁଁ ତାହା ଗ୍ରହଣ କଲେ

ଅପଣଙ୍କ ଗ୍ରହଣ କରିବା ସଙ୍ଗେ ସମାନ ହେବ । ସେ ଟଙ୍କା ନେଲେ ତାକୁ ଅପଣଙ୍କ ସେବା ଏବଂ ଅନ୍ୟାନ୍ୟ ଅବଶ୍ୟକ କାମରେ ଖରଚ ନ କରି ରଖି ପାରିବ ନାହିଁ, ଫଳରେ ତାହା ଅପଣ ଗ୍ରହଣ କରିବା ସଙ୍ଗେ ସମାନ ହେଲ ନାହିଁ କି ? ଲୋକମାନେ ଅପଣଙ୍କର ତ୍ୟାଗ ବୈରାଗ୍ୟ ଦେଖି ଶ୍ରଦ୍ଧା ଭକ୍ତି କରିଥାନ୍ତି; ଅତଏବ ଏ ଟଙ୍କା ନେବା ସମୀଚୀନ ନୁହେଁ ।" ତାହାଙ୍କ କଥା ଶୁଣି ଠାକୁର ମହା ଆନନ୍ଦିତ ହେଲେ ଏବଂ ଦୁଶ୍ଚିନ୍ତା ଦୂର ହେଲ ।

ଏଠାରେ ଅଉ ଗୋଟିଏ ଘଟନାର ଉଲ୍ଲେଖ କଲେ ଅପ୍ରାସଙ୍ଗିକ ହେବ ନାହିଁ । ଶ୍ରୀ ଶ୍ରୀ ମାଅଙ୍କ ଉପସ୍ଥିତ ବୁଦ୍ଧିମତ୍ତା ଯୋଗୁଁ ଗୋଟିଏ ଡକାୟତଙ୍କ ହାତରୁ ସେ ନିଜକୁ ରକ୍ଷା କରି ପାରିଥିଲେ ।

ସେ ୧୨୭୮ ସାଲଠାରୁ ଦକ୍ଷିଣେଶ୍ୱରରେ ଠାକୁରଙ୍କ ନିକଟରେ ସଲଜ୍ଜ କୁଳବଧୂ ପରି ବାସ କରୁଥିଲେ । କେବେକେବେ କାର୍ଯ୍ୟ ଉପଲକ୍ଷରେ ତାହାଙ୍କୁ ଜନନୀ ଶ୍ୟାମାସୁନ୍ଦରୀଙ୍କ ନିକଟକୁ ଯିବାକୁ ପଡ଼ୁଥିଲ । ଠାକୁରେ ଥିବାଯାଏ ପ୍ରାୟ ପାଞ୍ଚ କି ଛଅ ଥର ସେ ଜୟରାମବାଟୀ ଯାଇଛନ୍ତି । ଅର୍ଥିକ ସ୍ୱଚ୍ଛଳତା ନ ଥିବାରୁ ପଦବ୍ରଜରେ ସେ ଯିବା ଆସିବା କରୁଥିଲେ । ଥରେ ଶ୍ରୀ ଶ୍ରୀ ମାଅ ଓ ଗ୍ରାମର ଅଉ କେତେକ ସ୍ତ୍ରୀ ଭକ୍ତ ମିଶି କାମାରପୁକୁରରୁ ଦକ୍ଷିଣେଶ୍ୱରକୁ ଅସୁଥିଲେ । ସେମାନେ ପ୍ରାୟ ଅଠ ମାଇଲ ଦୂର ଅସି ଅରାମବାଗ୍ ନାମକ ସ୍ଥାନରେ ପହଞ୍ଚିଲେ । ସେତେବେଳେ ଅଳ୍ପ ବେଳ ଅଛି ଜାଣି ସେଠାରେ ବିଶ୍ରାମ ନ କରି ତାରକେଶ୍ୱରରେ ରାତ୍ରରେ ରହିବା ସ୍ଥିର କରି ସେମାନେ ଅଗ୍ରସର ହେଲେ । ଏତେ ଦୂର ଯିବା କଷ୍ଟକର ହେଲେହେଁ ସଙ୍ଗୀମାନଙ୍କ ଅସୁବିଧା ହେବ ଜାଣି ମାଅ ତାହାଙ୍କ

କଥାରେ ଖଣ୍ଡ ହେଲେ । ଆରାମବାଗରୁ ତାରକେଶ୍ୱର ଯିବାକୁ ହେଲେ ମଝିରେ ବିସ୍ତୃତ ବିଲ ପଡେ । ସଙ୍ଗୀମାନଙ୍କ ସହିତ କିଛିକ୍ଷଣ ସମାନ ଭାବରେ ସେ ଚାଲିଲେ; କିନ୍ତୁ କ୍ଲାନ୍ତ ବଶତଃ ଅଉ ବେଶୀ ଚାଲି ପାରିଲେ ନାହିଁ । ସେମାନଙ୍କଠାରୁ ମାଆ ପଛରେ ପଡ଼ିରହିଲେ । ଦୁଇଥର ସଙ୍ଗୀମାନେ ତାହାଙ୍କ ଲାଗି ଅପେକ୍ଷା କଲେ; କିନ୍ତୁ ଅଧିକ ରାତି ହୋଇଗଲେ ଡକାୟତଙ୍କ ହାତରେ ପଡ଼ିବାକୁ ହେବ ଭାବି ସେମାନେ ଭୟରେ ଦ୍ରୁତ ଗତିରେ ଚାଲିଲେ । ମାଆ ପଛରେ ପଡ଼ିଲେ । ଦେଖୁ ଦେଖୁ ବେଳ ବୁଡ଼ିଗଲା । ଅନ୍ଧାରୁଆ ରାତି, ଭଗବାନଙ୍କର ନାମ ସ୍ମରଣ କରି ମାଆ ଏକାକିନୀ ଯାଉଛନ୍ତି – ଅଦୂରେ ଭୀଷଣାକାର କୃଷ୍ଣବର୍ଣ୍ଣ ପୁରୁଷ ହାତରେ ଠେଙ୍ଗା ଧରି ତାହାଙ୍କ ନିକଟକୁ ଧାଇଁ ଆସୁଥିବାର ଦେଖି ମାଆଙ୍କର ଦାରୁଣ ଭୟ ଜାତହେଲା । କଣ କରିବେ ? କେଉଁ ଆଡ଼େ ଯିବେ ? ସଙ୍ଗୀମାନେ ବହୁତ ଦୂର ଚାଲି ଗଲେଣି । ଉପାୟାନ୍ତର ନ ଦେଖି ସେଠାରେହିଁ ପିତୁଳା ପରି ନିଶ୍ଚଳ ହୋଇ ଛିଡ଼ା ହୋଇଗଲେ । ପ୍ରଥମେ ଭୀଷଣାକାର ପୁରୁଷଟି ଆସି କର୍କଶ ସ୍ୱରରେ ସମ୍ବୋଧନ କଲା ସତ, ପର କ୍ଷଣରେ ତାହାଙ୍କର ଦେବୀପ୍ରତିମ ସ୍ୱର୍ଗୀୟ ଜ୍ୟୋତିରେ ଉଦ୍ଭାସିତ ସୌମ୍ୟ ବଦନ ମଣ୍ଡଳ ଦେଖି ସେ ସ୍ତମ୍ଭୀଭୂତ ହୋଇଗଲା । ତାହା ମୁହଁରୁ ଆଉ ବାକ୍ୟ ସ୍ଫୁରିଲା ନାହିଁ । ଶ୍ରୀ ଶ୍ରୀ ମାଆ ସ୍ନେହ ବାଳିକା ପରି ତାହାକୁ ସମ୍ବୋଧନ କରି କହିଲେ, "ବାବା ! ତୁମ୍ଭର ଝିଅ ବିପଦରେ ପଡ଼ିଛି, ସଙ୍ଗୀମାନେ ଛାଡ଼ି ଚାଲି ଯାଉଛନ୍ତି, ଦକ୍ଷିଣେଶ୍ୱରରେ ଥିବା ତୁମ୍ଭର ଜାମାତାଙ୍କ ନିକଟକୁ ଯାଉଛି ।"

ଡକାୟତର ସ୍ତ୍ରୀ ମଧ୍ୟ ତା' ସଙ୍ଗରେ ଥିଲା । ତାହାକୁ ମାଆ ସମ୍ବୋଧନ କରି ଶ୍ରୀ ଶ୍ରୀ ମାଆ ଅପ୍ୟାୟିତ କଲେ । ତାଙ୍କ ସରଳ କଥା ଓ ବ୍ୟବହାରରେ ସେ ଦୁହେଁ ଏତେଦୂର ମୁଗ୍ଧ ହେଲେ ଯେ

ତାହାଙ୍କର ଅଯାଚ୍ୟ ସ୍ନେହ ଉଚ୍ଛୁଳି ପଡ଼ନ୍ତି । ଉକ୍ତ ଯୁବକ ଓ ତାହାର ସ୍ତ୍ରୀ ଉଭୟେ ନିଜ କନ୍ୟା ପରି ତାହାଙ୍କୁ ଆଦର ଯତ୍ନ କଲେ । ଉକ୍ତ ଯୁବକର ସ୍ତ୍ରୀ ତାହାଙ୍କୁ ସଙ୍ଗରେ ନେଇଯାଇ ନିଜ ଝିଅପରି ସେହି ରାତିରେ ଜଳଖିଆ କିଣିଆଣି ଖୁଆଇ ନିଜପାଖରେ ଶୋଇବାର ବ୍ୟବସ୍ଥା କଲେ । ଉକ୍ତ ଯୁବକଟି ପିତାଙ୍କପରି ଠେଙ୍ଗା ହାତରେ ଧରି ଦ୍ୱାର ମୁହଁରେ ସାରା ରାତି ଜଗିରହିଲେ । ସକାଳେ ବିଛଣାରୁ ଉଠିବା ପରେ ମାଆଙ୍କୁ ସଙ୍ଗରେ ନେଇ ସେମାନେ ତାରକେଶ୍ୱର ଯାତ୍ରା କଲେ । ଯାଉଁ ଯାଉଁ କ୍ଷେତରେ ହୋଇଥିବା ମଟର ଛୁଇଁ ତୋଳି ସ୍ନେହରେ ତାହାଙ୍କୁ ଖାଇବାକୁ ଦେଲେ । ମାଆ ମଧ୍ୟ ପିଲାଙ୍କପରି ସେସବୁ ଚୋବାଇ ଚୋବାଇ ଚାଲିଲେ । ପ୍ରାନ୍ତର ଅତିକ୍ରମ କରିବାକୁ ସେମାନଙ୍କୁ ଅନେକ ସମୟ ଲାଗିଲା । ତାପରେ ତାରକେଶ୍ୱରରେ ପହଞ୍ଚିବା ମାତ୍ରେ ଉକ୍ତ ଯୁବକର ସ୍ତ୍ରୀ ତାହାର ସ୍ୱାମୀଙ୍କୁ ବଜାରରୁ ଶିବଙ୍କଠାରେ ପୂଜା ଦେବାଲାଗି ସାମଗ୍ରୀ ଏବଂ ରାନ୍ଧିବାଲାଗି ପନିପରିବା ଆଣିବାକୁ କହିଲେ । ସେହିସମୟରେ ଅନୁସନ୍ଧାନ କରୁ କରୁ ମାଆଙ୍କର ସଙ୍ଗୀମାନଙ୍କ ସହିତ ଭେଟ ହେଲା । ସମସ୍ତେ ମିଳି ରନ୍ଧନ ଭୋଜନାଦି ସମାପନ କରି ଦକ୍ଷିଣେଶ୍ୱରକୁ ଯିବାଲାଗି ଉଦ୍ୟତ ହେଲାବେଳେ ଉକ୍ତ ଯୁବକ ଓ ତାହାର ସ୍ତ୍ରୀ ପିତାମାତାଙ୍କପରି ଅଧୀର ହୋଇ ଅଶ୍ରୁ ବିସର୍ଜନ କଲେ । ଉଭୟେ ମାଆଙ୍କ ପବିତ୍ର କାନରେ ଖାଇବା ଜିନିଷ ବାନ୍ଧି ଦେଇ ସମ୍ବୋଧନ କରି କହିଲେ, "ମାଆ ସାରଦା ! ରାତିରେ ଭୋକ ଲାଗିଲେ ଏହାକୁ ଖାଇବୁ ।" ଉକ୍ତ ଯୁବକଟି କହିଲା, "ମାଆ, ମୋ ସ୍ତ୍ରୀ ସଙ୍ଗରେ ନଥିଲେ ତୋତେ ଦକ୍ଷିଣେଶ୍ୱରରେ ଛାଡ଼ି ଆସିଥାନ୍ତି ।" ଶ୍ରୀ ଶ୍ରୀ ମାଆ ମଧ୍ୟ ସେମାନଙ୍କୁ ଦକ୍ଷିଣେଶ୍ୱର ଯିବାଲାଗି ଅନୁରୋଧ କରି ବିଦାୟ ନେଲେ । ବିଦାୟ କାଳୀନ ସେମାନଙ୍କର କରୁଣ ଦୃଶ୍ୟ ମାଆଙ୍କ ଜୀବନରେ ଚିରାଙ୍କିତ ଥିଲା । ପରବର୍ତ୍ତୀ

ସମୟରେ ଭକ୍ତମାନଙ୍କ ନିକଟରେ ଉଦ୍‌ବୋଧନ ବାବାଜୀ ବାହାରି ସେ ଏହିପରି କହିଥିଲେ, "ଡାହାଣଦଗ ରାସ୍ତାରେ ବାବା ଚାଲିଗଲେ, ମୁଁ ବାମଦଗ ରାସ୍ତାରେ ଚାଲିଆସିଲି, ସେଠେଇରୁ ଦେଖାଯାଏ ଫେରି ଫେରି ଅନାଏଁ ଓ କାନ୍ଦେ ।"

ଦକ୍ଷିଣେଶ୍ୱରକୁ ଆସି ଶ୍ରୀ ଶ୍ରୀ ମାଆ ଠାକୁରଙ୍କ ନିକଟରେ ସମସ୍ତ ଘଟନା କହିଥିଲେ । କିଛିଦିନ ଗଲା ଉତ୍ତାରୁ ସତକୁସତ ଉଦ୍‌ବୋଧନ ଓ ତାହାର ସ୍ତ୍ରୀ ଉଭୟେ ମିଷ୍ଟାନ୍ନାଦି ସଙ୍ଗରେ ଘେନି ଧନେ ଝିଅଟିକୁ ଦେଖିବାକୁ ଦକ୍ଷିଣେଶ୍ୱରକୁ ଆସି ଠାକୁରଙ୍କଠାରୁ ଜ୍ୱାଇଁଙ୍କ ଜାମାତାଙ୍କ ପରି ବ୍ୟବହାର ପାଇ ସନ୍ତୁଷ୍ଟ ହୋଇଥିଲେ । କିଏ କହିବ ଏହି ଉଦ୍‌ବୋଧନ ବେଶଧାରୀ କିଏ ? ଜନ୍ମ ଜନ୍ମାନ୍ତରରୁ ଠାକୁର ଓ ମାଆଙ୍କ ସଙ୍ଗରେ ଏମାନଙ୍କ ସମ୍ବନ୍ଧ ବା କଅଣ ଥିଲା ?

ମାସ ପରେ ମାସ, ବର୍ଷ ପରେ ବର୍ଷ ସେହି ଛୋଟ କୋଠରୀରେ ବାସ କରିବା ଓ କଠୋର ପରିଶ୍ରମ କରିବା ଯୋଗୁଁ ଶ୍ରୀ ଶ୍ରୀ ମାଆ କଠିନ ଆମାଶୟ ରୋଗରେ ପୀଡ଼ିତା ହେଲେ । ଠାକୁରଙ୍କ ଭକ୍ତ ଶମ୍ଭୁବାବୁଙ୍କ ବିଶେଷ ଯତ୍ନ ଏବଂ ଚିକିତ୍ସାର ବ୍ୟବସ୍ଥା ଫଳରେ କିଛିଟିକିଏ ଆରୋଗ୍ୟ ଲାଭ କଲା ଉତ୍ତାରୁ ବାୟୁ ପରିବର୍ତ୍ତନ ଲାଗି ପୁନରାୟ ପିତ୍ରାଳୟ ଜୟରାମବାଟୀକୁ ସେ ଗଲେ । ସେଠାକୁ ଯାଇ ମଧ୍ୟ ରୋଗ ହସ୍ତରୁ ମୁକ୍ତି ମିଳିଲା ନାହିଁ । ପୁଣି ସେହି ଆମାଶୟ ରୋଗରେ ପୀଡ଼ିତା ହୋଇ ଶଯ୍ୟାଶାୟିନୀ ହେଲେ; ଏପରିକି ତାହାଙ୍କ ଦେହରକ୍ଷା ପର୍ଯ୍ୟନ୍ତ ସଂଶୟର ବିଷୟ ହେଲା । ବାରମ୍ବାର ଝାଡ଼ା ହେବା ଫଳରେ ତାହାଙ୍କ ଦେହ ଅବସନ୍ନ ହୋଇ ପଡ଼ିଲା । ଯେଉଁଠାରେ ଶୌଚ ସେହିଠାରେହିଁ ଶୟନ, ଉଠିବାକୁ ଶକ୍ତି ରହିଲା ନାହିଁ । ଶରୀର ଅସ୍ଥିକଙ୍କାଳସାର ହେଲା । ପୁଣି ଦେହ

ଫୁଲି ଗଲା, ନାକ କାନରୁ ପାଣି ବୋହିଲା, ଢାମଲ ରୋଗ ହେବାରୁ ଆଖିକୁ ଭଲ ଦିଶିଲା ନାହିଁ, ଜହ୍ନରାତି ତାଙ୍କୁ ଅମାବାସ୍ୟା ପରି ବୋଧ ହେଲା । ବଞ୍ଚିବାର ଆଶା ନ ଦେଖି ପୂର୍ବୋକ୍ତ ଗ୍ରାମର ସିଂହବାହିନୀ ଦେବୀଙ୍କ ପାଖରେ ସେ ଧାରଣା ଦେଲେ । ଦେବୀଙ୍କ ପାଖରେ ଅଳ୍ପ କିଛି ସମୟ ପଡ଼ି ରହିଲା ପରେ ତାହାଙ୍କୁ ଆଦେଶ ମିଳିଲା—ଦେବୀ କହିଲେ, "ତୁମ୍ଭେ ଏଠାରେ ପଡ଼ିରହିଛ କାହିଁକି ? ଶୀଘ୍ର ଉଠ । ତୁମ୍ଭର କଅଣ ହୋଇଛି ? ତୁମ୍ଭଙ୍କୁ ଔଷଧ ବତାଇ ଦେଉଛି,—ଲାଉ ଫୁଲରେ ଲୁଣ ଦେଇ ରଗଡ଼ି ତାହାର ରସ ଆଖିରେ ଦେବ, ଭଲ ହୋଇଯିବ ।"

ସତକୁ ସତ ଦେବୀଙ୍କ ନିର୍ଦ୍ଦିଷ୍ଟ ଔଷଧ ବ୍ୟବହାର ଦ୍ୱାରା ତାହାଙ୍କ ଆଖି ଭଲ ହୋଇଗଲା, ଫୁଲା କମିଗଲା, ଦେବୀଙ୍କ ଆଦେଶାନୁସାରେ ସେହି ମନ୍ଦିରସ୍ଥ ମୃତ୍ତିକା ଗ୍ରହଣ କରିବାଦ୍ୱାରା ଆମାଶୟ ରୋଗ ମଧ୍ୟ ଆରୋଗ୍ୟ ହୋଇଗଲା । ଅଳ୍ପ କେତେ ଦିନ ମଧ୍ୟରେ ସେ ସମ୍ପୂର୍ଣ୍ଣ ଆରୋଗ୍ୟ ଲାଭକଲେ । ସେହି ଦିନରୁ ଗ୍ରାମର ସିଂହବାହିନୀ ଦେବୀ ଖୁବ ଜାଗ୍ରତ ବୋଲି ସର୍ବତ୍ର ପ୍ରଚାରିତ ହେଲା । ଦୂର ଦୂରାନ୍ତରରୁ ଲୋକମାନେ ଆସି ଦେବୀଙ୍କୁ ପୂଜା ଅର୍ଚ୍ଚନା କରି ପରମ ଆନନ୍ଦ ଲାଭ କଲେ । ଆଜି ପର୍ଯ୍ୟନ୍ତ ରୋଗ ଆରୋଗ୍ୟ କାମନାରେ ସିଂହବାହିନୀ ଦେବୀଙ୍କ ମୃତ୍ତିକା ଲୋକମାନେ ସେବନ କରନ୍ତି ।

୧୨୮୦ ସାଲରେ ମାଆଙ୍କ ପିତା ଶ୍ରୀଯୁକ୍ତ ରାମଚନ୍ଦ୍ର ଈଶ୍ୱର ଦେହ ପରିତ୍ୟାଗ କରି ଇଷ୍ଟ ପଦରେ ମିଳିତ ହେବାରୁ ପିତୃବତ୍ସଳା କନ୍ୟା ଯେଉଁଭଳି ଶୋକାଭିଭୂତା ହୋଇଥିଲେ ତାହା କହିବା ବାହୁଲ୍ୟ ମାତ୍ର । ପିତା ପରଲୋକ ଗମନ କଲା ପରଠାରୁ ମାତା ଶ୍ୟାମା-

ସୁନ୍ଦରୀ ନାନା ଜଟିଳ ସମସ୍ୟାରେ ପଡ଼ିଲେ । ଘରେ ଅନ୍ନ ସମସ୍ୟା, ପୁଣି ଶ୍ରେଷ୍ଠ ପିଲାମାନଙ୍କ ଭରଣ ପୋଷଣ, ଲାଳନପାଳନ ଏକ ଗହନ ସମସ୍ୟା । ପୁଣି ଜମିରୁ ଯାହା ଧାନ ମିଳେ ସେଥିରେ ବର୍ଷକ ଯାଏ ନାହିଁ, କେହି ଉପାର୍ଜନ କରିବାକୁ ନାହାନ୍ତି, ତେଣୁ ଏକମାତ୍ର ଦୀନର ଅଶ୍ରୟ ଭଗବାନଙ୍କ ଉପରେ ନିର୍ଭର କରି ଶ୍ୟାମାସୁନ୍ଦରୀ କାୟିକ ପରିଶ୍ରମ ବଳରେ ସଂସାର ଚଳାଇବାକୁ ଲାଗିଲେ । ଶ୍ରୀ ସାରଦା ମଧ୍ୟ ବହୁକଷ୍ଟ ସ୍ୱୀକାର କରି ସାନ ଭାଇମାନଙ୍କ ଲାଳନ ପାଳନଠାରୁ ଆରମ୍ଭ କରି ସାଂସାରିକ ସକଳ କାର୍ଯ୍ୟରେ ସହାୟତାଦ୍ୱାରା ମାତୃଭକ୍ତିର ପରାକାଷ୍ଠା ଦେଖାଇଥିଲେ । ଦକ୍ଷିଣେଶ୍ୱରରେ ଅବସ୍ଥାନ କାଳରେ ମଧ୍ୟ ପ୍ରତିବର୍ଷ ଜନନୀଙ୍କୁ ସାହାଯ୍ୟ କରିବାପାଇଁ ଜଗଦ୍ଧାତ୍ରୀ ପୂଜା ସମୟରେ ତାହାଙ୍କୁ ଗ୍ରାମକୁ ଯିବାକୁ ପଡ଼ୁଥିଲା । ଶ୍ୟାମାସୁନ୍ଦରୀ ଦେବୀ-ସ୍ୱପ୍ନାଦିଷ୍ଟା ହୋଇ ଘରେ ଶ୍ରୀ ଶ୍ରୀ ଜଗଦ୍ଧାତ୍ରୀଙ୍କ ପୂଜାର ପ୍ରବର୍ତ୍ତନ କିପରି କରିଥିଲେ ସେ ସମ୍ବନ୍ଧରେ ଶ୍ରୀ ଶ୍ରୀ ମାଆ ନିମ୍ନଲିଖିତ ରୂପେ କହୁଥିଲେ —

"ଜୟରାମବାଟୀ ଗ୍ରାମର ଲୋକମାନେ ମିଳି ପ୍ରତିବର୍ଷ କାଳୀ ପୂଜା କରୁଥାନ୍ତି । ଥରେ ମନୋମାଳିନ୍ୟ ହେତୁରୁ ଉକ୍ତ ଗ୍ରାମର ନେତା ସଙ୍ଗତିସମ୍ପନ୍ନ ନବ ମୁଖାର୍ଜି ନାମକ ଏକ ବ୍ରାହ୍ମଣ ଜନନୀଙ୍କ ଚାଉଳ ନେଲେ ନାହିଁ । ସେ ସାରାବର୍ଷ ପରିଶ୍ରମ କରି ମାଗି ଯାଚି ନିଜ ସଂସାରରେ ବ୍ୟୟ ନ କରି ଅନେକ ଚାଉଳ ଏବଂ ପୂଜାର ଅନ୍ୟାନ୍ୟ ସାମଗ୍ରୀ ସଞ୍ଚୟ କରି ରଖିଥିଲେ । ସେହି ପୂଜାର ଦ୍ରବ୍ୟ ନ ନେବାରୁ ଜନନୀଙ୍କ ମନରେ ଘୋର ଦୁଃଖ ଆସିଲା । ସେ ଏପରି ମର୍ମାହତା ହେଲେ ଯେ ରାତିରେ ତାହାଙ୍କୁ ନିଦ ହେଲା ନାହିଁ । ସେ ସାରା ରାତି କାନ୍ଦି କାନ୍ଦି କହିଲେ, "ମୁଁ କାଳୀଙ୍କ ପାଇଁ ଚାଉଳ

ରଖିଥିଲି, ମୋ ଗୁଞ୍ଜଲ କେଉଁ ନାହିଁ; ଏ, ଗୁଞ୍ଜଲ କଅଣ ହେବ, ଏ ଗୁଞ୍ଜଲ କାଳୀଙ୍କ ନାମରେ ସମର୍ପି ଦେଇଛି, ଏହାକୁ ଅନ୍ୟ କେହି ଖାଇ ପାରିବେ ନାହିଁ ।" ଏହିପରି ଚିନ୍ତା ଓ ବ୍ୟାକୁଳତାରେ ଅବସନ୍ନ ହୋଇ ଭଲୁ ଭଲୁ ତାଙ୍କୁ ନିଦ ଲାଗିଗଲା । ସେତେବେଳେ ଜଗଦ୍ଧାତ୍ରୀ ଦେବୀ ଆବିର୍ଭୂତା ହୋଇ ଜନନୀଙ୍କ ଦେହରେ ହାତ ଦେଇ ଠେଲି ଉଠାଇ କହିଲେ, 'ତୁମେ ଏତେ କାନ୍ଦୁଛ କାହିଁକି ? କାଳୀଙ୍କ ଗୁଞ୍ଜଲ ମୁଁ ଖାଇବି, ତୁମେ ଏତେ ଭାବୁଛ କାହିଁକି ? ସେତେବେଳେ ଜନନୀ (ଶ୍ୟାମାସୁନ୍ଦରୀ) କହିଲେ, 'ତୁମେ କିଏ ?' ଦେବୀ କହିଲେ, 'ମୁଁ ଜଗଦ୍ଧାତ୍ରୀ । କାଳୀ ପୂଜା ପରେ ଯାହାର ପୂଜା ହୁଏ ।'

"ପରଦିନ ଜନନୀ ମୋତେ ଡାକି କହିଲେ 'ଅଲୋ ସାରଦା, ନାଲିଅଙ୍ଗ, ଗୋଡ଼ ଉପରେ ଗୋଡ଼ ଦେଇ ଯେ ଅଧିକାବସେ, ସେ କି ଠାକୁର ?' ଜଗଦ୍ଧାତ୍ରୀ ପୂଜା କରିବି, ଜଗଦ୍ଧାତ୍ରୀ ପୂଜା କରିବି ବୋଲି କହୁ କହୁ ବାଇଅଣୀ ପରି ହୋଇଗଲେ । ଗ୍ରାମର ଅପର ଲୋକଙ୍କଠାରୁ ଅନେକ କେତେ ଗୁଞ୍ଜଲ କରଜ ଆଣିଲେ । ସେତେବେଳେ ଏପରି ବର୍ଷା ଲାଗିଲା ଯେ ଧାନେ ସୁଦ୍ଧା ଶୁଖାଯାଇ ହେଲାନାହିଁ । ଅନବରତ ବର୍ଷା ଯାଗ ଦେଖି ଜନନୀ କହିଲେ, 'କିପରି ଜଗଦ୍ଧାତ୍ରୀ ପୂଜା ହେବ, ଧାନ ଶୁଖାଇବାକୁ ଧାନେ ବି ଖରା ହେଲାନାହିଁ ।' ତାପରେ ପୂଜାର କେତୋଟିଦିନ ପୂର୍ବରୁ ମା-ଜଗଦ୍ଧାତ୍ରୀ ଏପରି ଖରା ଦେଲେ ଯେ ଗ୍ରାମଅଡ଼େ ବର୍ଷା ହେଉଛି, ଜନନୀଙ୍କ ଧାନଶୁଖା ପଟିଣାରେ ଖରା । କୁମ୍ଭାରଆଁ କରି ଗଢ଼ା ହୋଇଥିବା ଜଗଦ୍ଧାତ୍ରୀ ମୂର୍ତ୍ତିକୁ ଶୁଖାଇ ରଙ୍ଗ କରିବାକୁ ହେଲା । ପ୍ରସନ୍ନ (ସାରଦାଙ୍କ ସାନ ଭାଇ) ଦକ୍ଷିଣେଶ୍ୱରରେ ଠାକୁରଙ୍କୁ ସମ୍ବାଦ ଦେବାକୁ

ଗଲା । ସେ ଶୁଣି କହିଲେ, 'ମା ଆସିବେ, ମା ଆସିବେ, ବେଶ ବେଶ । ତୁମର ଆର୍ଥିକ ଅବସ୍ଥା ଯେ ଖରାପ ଥିଲା ରେ ।' ପ୍ରସନ୍ନ ଠାକୁରଙ୍କୁ ଜଗଦ୍ଧାତ୍ରୀ ପୂଜା ସମୟରେ ଜୟରାମବାଟୀ ଯିବାପାଇଁ ଅନୁରୋଧ କରିବାରୁ, ସେ କହିଲେ,'ଏଥିରେହିଁ ମୋର ଯିବା ହେଲା । ଯାଅ ଭଲ ଭାବରେ ପୂଜା କର, ସେଥିରେ ତୁମର ଭଲ ହେବ ।'

"ଠାକୁରଙ୍କ ଆଦେଶ ନେଇ ପ୍ରସନ୍ନ ଆସିଲା । ଜଗଦ୍ଧାତ୍ରୀ ପୂଜା ଯଥାସମୟରେ ଯଥାବିଧି ସମ୍ପନ୍ନ ହେଲା । ଗ୍ରାମର ଲୋକମାନେ ଆସି ଦେବୀଙ୍କ ପ୍ରସାଦ ଭୋଜନ କରି ଆନନ୍ଦିତ ହେଲେ । ଅର୍ଥର କିମ୍ବା ଗୃଡ଼ଳ ପନାଯବିବାର ଅଭାବ ହେଲା ନାହିଁ । ପ୍ରତିମା ବିସର୍ଜନ ବେଳେ ମୋ ମାଆ ( ଶ୍ୟାମାସୁନ୍ଦରୀ ) ଜଗଦ୍ଧାତ୍ରୀଙ୍କ କାନରେ ଚୁପ ଚୁପ କରି କହିଲେ, 'ମା ଜଗାଇ ( ଜଗଦ୍ଧାତ୍ରୀ ) ପୁଣି ବର୍ଷକ ପରେ ଆସିବ । ମୁଁ ତୁମପାଇଁ ସମସ୍ତ ସାମଗ୍ରୀ ଯୋଗାଡ଼କରି ରଖିଥିବି ।'

"ତାହାର ପରବର୍ଷ ମୋ ମା (ଶ୍ୟାମାସୁନ୍ଦରୀ) ମୋତେ କହିଲେ, 'ସାରଦା ! ପୂଜାର ଖରଚ ଲାଗି ତୁ କିଛି ଦେବୁ, ମୁଁ ଜଗାଇ (ଜଗଦ୍ଧାତ୍ରୀ)ଙ୍କ ପୂଜା କରିବି ।' ସେଥିରେ ରାଜି ନହୋଇ କହିଲି, 'ବର୍ଷେ କଲ, ଥରେ ହେଲା, ପୁଣି କରିବା ପ୍ରୟୋଜନ କଅଣ ? ମୁଁ ଏତେ ଝଞ୍ଜଟକୁ ପାରିବି ନାହିଁ ।'

"ପୁନରାୟ ମୋତେ ସ୍ୱପ୍ନରେ ଜଗଦ୍ଧାତ୍ରୀ ଦେବୀଙ୍କ ଆଦେଶ ହେଲା । ଜୟା ବିଜୟା ସଖୀଦ୍ୱୟଙ୍କୁ ସଙ୍ଗରେ ନେଇ ଦେବୀ ଆସି କହିଲେ, 'ତୁ ଯଦି ନକରୁ ତାହାହେଲେ ଅନ୍ୟତ୍ର ଚାଲିଯିବି ।' ସେଥିରେ ମୁଁ ବ୍ୟାକୁଳ ଭାବରେ ପୂଜା ଗ୍ରହଣ କରିବାକୁ ପ୍ରାର୍ଥନା କଲି । ସେହିଦିନଠାରୁ ଆଜି ପର୍ଯ୍ୟନ୍ତ ପ୍ରତିବର୍ଷ ପୂଜା

ହୋଇଥାଏ । ସେତେବେଳେ ଶ୍ୟାମାସୁନ୍ଦରୀଙ୍କ ଘରେ ବେଶୀ ଲୋକ ନ ଥିବାରୁ ମୋତେ ପୂଜାର ବାସନ ମାଜିବାଠାରୁ ଆରମ୍ଭ କରି ସବୁ କାମ କରିବାକୁ ପଡ଼ୁଥିଲା । ପୂଜାର ଅନେକ ଦିନ ଆଗରୁ ଯାବତୀୟ ଆୟୋଜନ କରିବାକୁ ହେଉଥିଲା । ପ୍ରତିବର୍ଷ ମୋତେ ବାସନ ମାଜିବାରେ କଷ୍ଟ ହେଉଥିବାର ଦେଖି ପରବର୍ତ୍ତୀ କାଳରେ ସ୍ୱାମୀ ଯୋଗାନନ୍ଦ କାଠର ବାସନ କରିଦେଲେ ଏବଂ ଯେପରି ମା ଜଗଦ୍ଧାତ୍ରୀଙ୍କ ପୂଜା ପ୍ରତିବର୍ଷ ଚଳେ ସେଥିପାଇଁ ଧାନ ଜମି କିଣି ଦେଇଥିଲେ ।”

ଶ୍ରୀ ଶ୍ରୀ ମାଆ ଦକ୍ଷିଣେଶ୍ୱରରେ ଠାକୁରଙ୍କ ନିକଟରେ ପ୍ରାୟ ୧୫ ବର୍ଷ କାଳ ଅତିବାହିତ କରିଥିଲେ । କେବଳ ମଝିରେ ମଝିରେ ପିତାମାତାଙ୍କୁ ସାହାଯ୍ୟ କରିବା ପାଇଁ ଜୟରାମବାଟୀ ଯିବାକୁ ପଡୁଥିଲା । ଅବଶିଷ୍ଟ କାଳ ଠାକୁରଙ୍କ ସେବାରେ କିପରି ସେ ନିଜକୁ ଉତ୍ସର୍ଗ କରିଥିଲେ ତାହାଁର କିଛିତ ଆଭାସ ଏଥିପୂର୍ବରୁ ଦିଆଯାଇଛି । ବର୍ତ୍ତମାନ ଠାକୁରଙ୍କ ଶେଷ ଅବସ୍ଥାରେ କିପରି ସେ ଅତି ନିପୁଣତା ସହିତ ପରିଚର୍ଯ୍ୟା କରିଥିଲେ ତାହାହିଁ ଏଠାରେ ଆଲୋଚ୍ୟ ।

ଏଥିପୂର୍ବରୁ ବର୍ଣ୍ଣିତ ହୋଇଛି ଯେ ପାନିହାଟୀ ମହୋତ୍ସବକୁ ଭକ୍ତମାନଙ୍କ ସଙ୍ଗରେ ଯେବେ ଠାକୁର ଯାଇଥିଲେ । ସେଠାରେ ତାହାଙ୍କର ଅଧିକ ଭାବସମାଧି ହୋଇଥିଲା ଏବଂ ଥଣ୍ଡା ଲାଗିଥିଲା । ସେହି ଦିନଠାରୁ ଠାକୁରଙ୍କ ଗଳରୋଗର ସୂତ୍ରପାତ ହେଲା । ଔଷଧ-ପଥ୍ୟ ସେବନଦ୍ୱାରା କିଛି ଫଳ ନହୋଇ କ୍ରମଶଃ ରୋଗ ବଢ଼ିବାକୁ ଲାଗିଲା । ଅମାବାସ୍ୟା ଓ ପୂର୍ଣ୍ଣିମା ତିଥିରେ ଗଳାର ବେଦନା ଏପରି ପ୍ରବଳ ହେଉଥାଏ ଯେ ସୁଜିର ପାୟସ ଛଡ଼ା ଅନ୍ୟକିଛି ଦ୍ରବ୍ୟ ଗଳାରେ ଯାଉ ନ ଥାଏ । ଭାଦ୍ରମାସରେ ଦିନେ ତାହାଙ୍କ ଗଳାରୁ ରୁଧିର ନିର୍ଗତ

ହେବାରୁ ଭକ୍ତମାନେ ବିଶେଷ ଚିନ୍ତିତ ହେଲେ । ସୁବିଜ୍ଞ ଡାକ୍ତରଙ୍କ ଦ୍ୱାରା ଚିକିତ୍ସା କରାଇବା ପାଇଁ ସେମାନେ ତାହାଙ୍କୁ କଲିକତାକୁ ନେଇ ଆସି ଶ୍ୟାମପୁକୁର ଷ୍ଟ୍ରୀଟ୍‌ରେ ଗୋଟିଏ ଘର ଭଡ଼ା କରି ରଖିଲେ । କଲିକତାର ପ୍ରସିଦ୍ଧ ଡାକ୍ତର ମହେନ୍ଦ୍ର ସରକାରଙ୍କ ଚିକିତ୍ସାରେ ସେ ରହିଲେ । କେବଳ ଔଷଧ ଦ୍ୱାରାହିଁ ଯେ ରୋଗ ଆରୋଗ୍ୟ ହୁଏ, ତାହା ନୁହେଁ, ବିଶେଷତଃ ଅତି ସାବଧାନତାର ସହିତ ପଥ୍ୟାଦି ପ୍ରସ୍ତୁତ କରି ନ ପାରିଲେ ଚିକିତ୍ସାର କୌଣସି ଫଳ ହେବ ନାହିଁ ଭାବି ଭକ୍ତମାନେ ଦକ୍ଷିଣେଶ୍ୱରରୁ ଶ୍ରୀ ଶ୍ରୀ ମାଆଙ୍କୁ ଆଣିବାକୁ ସ୍ଥିର କଲେ । ଅପରିଚିତ ପୁରୁଷମାନଙ୍କ ମଧ୍ୟରେ ସେ କିପରି ବା ବାସ କରିବେ ? ତାହାଛଡ଼ା ଅଲଗା ଭିତର ଘର ନାହିଁ । ତେଣୁ ତାହା ଏକ ମହାସମସ୍ୟା ହେଲା । ସଙ୍କୋଚ ଓ ଲଜ୍ଜାପଟରେ ଚିର କାଳ ଆବୃତା ଥିଲେହେଁ ଶ୍ରୀ ଶ୍ରୀ ମାଆ ଦେଶ-କାଳ-ପାତ୍ର ଭେଦରେ ନିଜକୁ ନିୟନ୍ତ୍ରିତ କରି ଚଳିବା ଶିଖିଥିଲେ । ସୁତରାଂ ଶୁଣିବା ମାତ୍ରେ ନିଜର ଅସୁବିଧା କଥା ନ ଭାବି ଠାକୁରଙ୍କ ପଥ୍ୟ ପ୍ରସ୍ତୁତ କରିବାଲାଗି ଦକ୍ଷିଣେଶ୍ୱରରୁ ଶ୍ୟାମପୁକୁରକୁ ଚାଲି ଆସିଲେ । ଠାକୁରେ କିପରି ରୋଗମୁକ୍ତ ହେବେ—ଏହାହିଁ ତାହାଙ୍କ ମୁଖ୍ୟ ଚିନ୍ତା ହେଲା ଏବଂ ସେ ଦିନ ରାତି କାୟମନୋବାକ୍ୟରେ ତାହାଙ୍କ ସେବାରେ ନିଯୁକ୍ତ ରହିଲେ ।

ଶ୍ୟାମପୁକୁର ଷ୍ଟ୍ରୀଟରେ ଯେଉଁ ଘର ଭଡ଼ା ନିଆ ହୋଇଥିଲା ତାହା ଖୁବ୍ ଛୋଟ । ସ୍ନାନ କରିବା ଘର ଗୋଟିଏ, ତେଣୁ କେହି ନ ଉଠୁଣୁ ମାଆ ରାତି ତିନିଟାରୁ ଉଠି ସ୍ନାନାଦି ନିତ୍ୟ କର୍ମ ସାରି ଚାଲି ଯାଉଥିବାରୁ ତାହାଙ୍କୁ ଅନ୍ୟ କେହି ଦେଖିବାକୁ ପାଉ ନଥିଲେ । ଛାତକୁ ଯିବାବେଳେ ପାର୍ଶ୍ୱରେ ଗୋଟିଏ କୋଠରୀ ଥିଲା । ସେହି

ସଂକୀର୍ଣ୍ଣ ସ୍ଥାନରେ ବସି ଠାକୁରଙ୍କ ପଥ୍ୟାଦି ପ୍ରସ୍ତୁତ କରୁଥିଲେ।
ଖାଇବା ବେଳେ ଠାକୁରଙ୍କ ଘରୁ ସମସ୍ତେ ଚାଲିଯିବା ଉତ୍ତାରୁ ଶ୍ରୀ ଶ୍ରୀ
ମାଆ ତାହାଙ୍କୁ ଖୁଆଇବାକୁ ଆସୁଥିଲେ । ରାତି ତିନିଟାରୁ ରାତି
ଏଗାରଟା ପର୍ଯ୍ୟନ୍ତ ସେ କାର୍ଯ୍ୟରେ ଲିପ୍ତ ରହୁଥିଲେ । ସମସ୍ତେ
ଶୋଇବା ପରେ ତାହାଙ୍କ ନିର୍ଦ୍ଦିଷ୍ଟ ଘରେ ସାମାନ୍ୟ କେତେ ଘଣ୍ଟା
ମାତ୍ର ବିଶ୍ରାମ ନେଉଥିଲେ । ସବୁଠାରୁ ଉଲ୍ଲେଖଯୋଗ୍ୟ ବିଷୟ ଏହି
ଯେ ଦିନ ପରେ ଦିନ, ମାସ ପରେ ମାସ ଚବିଶ ଘଣ୍ଟା ଠାକୁରଙ୍କ
ସେବା କାର୍ଯ୍ୟରେ ବ୍ୟାପୃତା ଥିଲେ ମଧ୍ୟ ସମାଗତ ଲୋକମାନେ
ଶ୍ରୀ ଶ୍ରୀ ମାଆଙ୍କ ଅବସ୍ଥିତି ତିଳେ ମାତ୍ର ଜାଣିପାରୁ ନଥିଲେ । ସ୍ୱଳ୍ପ
ପରିମିତ ଅଥଚ ଲୋକବାକପୂର୍ଣ୍ଣ ସ୍ଥାନରେ ନିଜର ଅସ୍ତିତ୍ୱ ପର୍ଯ୍ୟନ୍ତ
ଗୋପନ କରି ମନୁଷ୍ୟ ଯେ ଦିନ ପରେ ଦିନ ନୀରବରେ ଏପରି
କର୍ମମୟ ଜୀବନ ଯାପନ କରିପାରେ, ତାହା ଭାବିଲେ ବିସ୍ମିତ
ହେବାକୁ ପଡ଼େ ଏବଂ ଏପରି ଦୃଷ୍ଟାନ୍ତ ଅତି କେଉଁଠାରେ ମିଳିବ
କି ନାହିଁ ସନ୍ଦେହ । ସେଥିଲାଗି 'ଶ୍ରୀ ଶ୍ରୀ ରାମକୃଷ୍ଣ ପୋଥି' ନାମକ
ପୁସ୍ତକ ପ୍ରଣେତା ବିସ୍ମିତ ହୋଇ ଲେଖିଛନ୍ତି—

"ବନ୍ଦୁଁ ନିବାସିନୀ ମାତା ପୁନାଣ୍ଟିଲ ଛାନେ
କୃପାୟ ତାହାର ଏବେ ଦେଖିନ୍ନ ନୟନେ ।"

ଡାକ୍ତର ମହେନ୍ଦ୍ର ସରକାରଙ୍କ ଦ୍ୱାରା ଚିକିତ୍ସାର ବ୍ୟବସ୍ଥା
ଫଳରେ ପ୍ରଥମେ କିଛି ସୁଫଳ ମିଳିଥିଲା; କିନ୍ତୁ ତାହା ସ୍ଥାୟୀ
ହେଲନାହିଁ । ସ୍ୱାସ୍ଥ୍ୟର ଉନ୍ନତି ହେଉ ନାହିଁ ଜାଣି ଭକ୍ତମାନେ
ଚିନ୍ତିତ ହୋଇ ପଡ଼ିଲେ । ଡାକ୍ତରଙ୍କ ପରାମର୍ଶାନୁସାରେ ସେମାନେ
କଲିକତା ବାହାରେ କାଶୀପୁର ବଗିଚାକୁ ତାହାଙ୍କୁ ନେଇ ଆସିଲେ ।
ସେମାନେ ଯେଉଁ ବଗିଚା ଭଡ଼ା ନେଲେ ତାହା ଅତି ରମଣୀୟ—

ଫଳ ଫୁଲରେ ପରିପୂର୍ଣ୍ଣ, ସେଥିରେ ଦୁଇଟି ପୁଷ୍କରଣୀ, କୋଳାହଳ ଶୂନ୍ୟ ଅଥଚ ଏକାନ୍ତ ନିର୍ଜନ ସ୍ଥାନ, ବଗିଚା ମଧ୍ୟରେ ଦ୍ୱିତଳ ପ୍ରାସାଦ, ଚାରିଆଡ଼େ ସୁଗନ୍ଧଯୁକ୍ତ ବାୟୁ । ଠାକୁର ସେହି ଉଦ୍ୟାନ ବୋଟି ଦେଖି ବାଳକ ପରି ଅତ୍ୟନ୍ତ ଆନନ୍ଦିତ ହେଲେ । ବିସ୍ତୀର୍ଣ୍ଣ ସ୍ଥାନର ମୁକ୍ତ ବାୟୁ ସେବନ ଏବଂ ପ୍ରବୀଣ ଅଭିଜ୍ଞ ଡାକ୍ତରଙ୍କ ଦ୍ୱାରା ଚିକିତ୍ସିତ ହେବା ଫଳରେ ତାହାଙ୍କ ଗଳରୋଗର ଉପଶମ ହେଲା ସତ; କିନ୍ତୁ କେତେ ମାସ ସୁସ୍ଥତା ବୋଧକଲା ଉତ୍ତାରୁ ପୁଣି ବ୍ୟାଧିର ପ୍ରକୋପ ବଢ଼ିଲା । ଏହି ସମୟରେ ତ୍ୟାଗୀ ଯୁବକଗଣ ଘର ଦ୍ୱାର ଛାଡ଼ି ଶ୍ରୀ ଗୁରୁଙ୍କ ସେବାରେ ଓ ସାଧନ ଭଜନରେ ଆତ୍ମନିୟୋଗ କଲେ । ଧନ ରତ୍ନ ସେବକର ପ୍ରୟୋଜନ । ତାହାଙ୍କ ସେବାରେ ଯେପରି ତ୍ରୁଟି ନ ହୁଏ ସେଥିଲାଗି ପାଳି କରି ଭକ୍ତ ଓ ତ୍ୟାଗୀ ଯୁବକମାନେ ପରିଚର୍ଯ୍ୟା କଲେ ।

ଶ୍ରୀ ଶ୍ରୀ ମାଆ ମଧ୍ୟ ପୂର୍ବପରି ଉଦ୍ୟାନବାଟୀର ଅତି ନିଭୃତ କୋଠରୀରେ ରହି ପଥ୍ୟାଦି ପ୍ରସ୍ତୁତ କରିବାରେ ତତ୍ପର ହେଲେ । ଠାକୁରଙ୍କ ସେବାହିଁ ତାହାଙ୍କର ତପସ୍ୟା । ସେବାରେ ମାଆଙ୍କର କ୍ଳାନ୍ତି ନାହିଁ, ଅବସାଦ ନାହିଁ, ନିଦ୍ରା ନାହିଁ । କିପରି ଠାକୁରେ ରୋଗରୁ ମୁକ୍ତ ହେବେ—ଏହାହିଁ ସର୍ବଦା ତାହାଙ୍କର ଚିନ୍ତା । କାଶୀ-ପୁର ବଗିଚାରେ ସେବା କରୁଥିବା ବେଳେ କ୍ଳାନ୍ତ ଓ ଅନିଦ୍ରା ବଶତଃ ମୁଣ୍ଡ ବୁଲାଇ ହୋଇ ଦିନେ ମାଆ ପାହାଚରୁ ପଡ଼ିଗଲେ । ପଥ୍ୟ ପ୍ରସ୍ତୁତ କରି ଦ୍ୱିତଳକୁ ଠାକୁରଙ୍କ ନିକଟକୁ ନେଇ ଯିବାବେଳେ ପାହାଚରୁ ପଡ଼ିଯାଇ ପାଦରେ ଏପରି ଆଘାତ ପାଇଲେ ଯେ ତିନିଦିନ ଶଯ୍ୟା-ଶାୟିନୀ ହେବାକୁ ପଡ଼ିଲା । ସେଥିଯୋଗୁଁ ସେହି କେତୋଟି ଦିନ ପଥ୍ୟ ଖୁଆଇବାକୁ ସେ ଅକ୍ଷମ ହୋଇଥିଲେ ।

ଅଶେଷ ଯତ୍ନ ଓ ଚିକିତ୍ସାଫଳରେ ଠାକୁରଙ୍କ ଗଳାର ବ୍ୟାଧି କମିବା ଦୂରେ ଥାଉ କ୍ରମଶଃ ବଢ଼ିବାକୁ ଲାଗିଲା । ଚିକିତ୍ସକଗଣ ହତାଶ ହେଲେ । ଏକମାତ୍ର ଶାନ୍ତି ମୁକ୍ତିର ଅଶେଷ ସ୍ଥଳ ଶ୍ରୀ ଗୁରୁ-ଦେବଙ୍କ ଏତାଦୃଶ ଶୋଚନୀୟ ଅବସ୍ଥା ଜାଣି ଭକ୍ତମାନେ ମହା ଆକୁଳ ହେଲେ । ଉପାୟାନ୍ତର ନାହିଁ ଭାବି ଶ୍ରୀ ଶ୍ରୀ ମାଆ ତାରକେଶ୍ୱର ଯାଇ ବାବା ତାରକନାଥଙ୍କ ନିକଟରେ ପ୍ରାର୍ଥନା କରି ଧାରଣା ଦେଲେ ।

ଏଥର ବାବା ଭୋଳାନାଥଙ୍କ ଇଚ୍ଛା ଅନ୍ୟରୂପ ହେଲା । ମାଆ ସେଠାରେ ଦୁଇଦିନ, ନ ଖାଇ ନ ପିଇ ପଡ଼ି ରହିଲେ ସୁଦ୍ଧା ତାରକନାଥଙ୍କ ଠାରୁ କୌଣସି ଆଦେଶ ମିଳିଲା ନାହିଁ । ତୃତୀୟ ଦିନ ରାତିରେ ହୋଠାଏ କଅଣ ଶବ୍ଦ ହେଲା ଯେ ସେଥିରେ ମାଆ ଚମକି ଉଠିଲେ । ବହୁତ ହାଣ୍ଡି ଏକାଠି ସଜାଡ଼ିରଖି ତା ଉପରେ ଆଘାତ କଲେ ଯେପରି ଶବ୍ଦ ହୁଏ ସେହିପରି ହେଲା । ତହିଁରୁ ତାହାଙ୍କର ବୈରାଗ୍ୟ ଜାତ ହେବାରୁ ସେ ମନେ ମନେ ଭାବିଲେ "ଜଗତରେ କିଏ କାହାର ସ୍ୱାମୀ ! ଏ ସଂସାର ବା କାହାର ! କାହା ପାଇଁ ମୁଁ ଏଠାକୁ ଆସିଛି ! କେଉଁ ଅଲଗି ପ୍ରାଣତ୍ୟାଗ କରିବାକୁ ବସିଛି !" ବାବା ଭୋଳାନାଥ ଏହିପରି ଭାବରେ ସବୁ ମାୟା କଟାଇ ଦେଇ ତାହାଙ୍କ ମନରେ ବୈରାଗ୍ୟ ଆଣି ଦେବାରୁ ସେ ଆଉ ସେଠାରେ ନରହି ତା ପରଦିନ ଠାକୁରଙ୍କ ପାଖକୁ ଚାଲିଆସିଲେ । ଆସିବା ମାତ୍ରେ ଠାକୁର ତାହାଙ୍କୁ ପଚାରିଲେ— "କିଗୋ ! ତାରକେଶ୍ୱର ଯାଇଥିଲ କଅଣ ହେଲା ?" ମା କହିଲେ, 'କିଛି ହେଲା ନାହିଁ, (ଅଙ୍ଗୁଳି ଦେଖାଇ) କିଛି ହେଲା ନାହିଁ ।'

ଅନ୍ତର୍ଯାମୀ ଠାକୁରଙ୍କୁ କିଛି ଅଜଣା ନାହିଁ । ଜଗଜ୍ଜନନୀ ତାହାଙ୍କୁ ଆଉ ବେଶୀ ଦିନ ଇହଲୋକରେ ରଖିବେ ନାହିଁ । ଯାହା

କରିବାର ଥିଲା ତାହା ଶେଷ ହୋଇ ଯାଇଛି । ସମାଗତ ତ୍ୟାଗୀ ଯୁବକ ଓ ଭକ୍ତମାନେ ନିଜ ସ୍ୱରୂପ କଥଣ, ଠାକୁରଙ୍କ ସହିତ ସମ୍ପର୍କ କଅଣ, ତାହା ଏକପ୍ରକାର ବୁଝି ପାରିଛନ୍ତି । ଦେହତ୍ୟାଗ କରିବା ଶେଷ ଦିନରେ ଠାକୁର ପଞ୍ଜିକା ଦେଖି ତଥି, ବାର, ନକ୍ଷତ୍ର ଜାଣିଲେ । ୧୨୯୩ ସାଲ ତା ୩୧ ଶ୍ରାବଣ ରାତି ଗୋଟାକ ସମୟରେ ଠାକୁର ଗଭୀର ସମାଧିରେ ମଗ୍ନହେଲେ । ପରଦିନ ବେଳ ଦୁଇଟା ତିନିଟା ସମୟରେ ଠାକୁରଙ୍କ ଦେବଦୁର୍ଲ୍ଲଭ ଦେହ କାଶୀପୁର ଶ୍ମଶାନ ଘାଟରେ ସମାହିତ କରିବାକୁ ନେବା ବେଳେ ଶ୍ରୀ ଶ୍ରୀ ମାଅଙ୍କ ଶୋକସିନ୍ଧୁ ଅଧୁର ଉଚ୍ଛୁଳି ପଡ଼ିଲା । କାନ୍ଦି କାନ୍ଦି କହିବାକୁ ଲଗିଲେ,'ଠାକୁରେ ଅମ୍ଭଙ୍କୁ ଛାଡ଼ି କେଉଁଠାକୁ ଗଲ,କାହା ଆଶ୍ରାରେ ରହିବୁଁ, କାହାଠାରୁ ଅଉ ପ୍ରେରଣା ପାଇବୁ ?'ଇତ୍ୟାଦି । ସେ ଯେଉଁ ଅଳଙ୍କାର ପିନ୍ଧି ଥିଲେ ହିନ୍ଦୁଶାସ୍ତ୍ର ମତରେ ତାହା ଖୋଲିବାକୁ ପଡ଼େ । ତେଣୁ ଶ୍ରୀ ଶ୍ରୀ ମାଅ ହାତରୁ ବଳା ଇତ୍ୟାଦି ଖୋଲିବା ବେଳେ ହଠାତ୍ ଠାକୁର ସଶରୀରରେ ଦେଖା ଦେଇ ତାହାଙ୍କ ହାତ ଦୁଇଟା ଧରି କହିଲେ, 'ତୁମ୍ଭେ ଏତେ କାନ୍ଦୁଛ କାହିଁକି ? ମୁଁ କେଉଁଠାକୁ ଯାଇଛି କି ? ଯେପରି ଏ ଘରୁ ସେ ଘର ।'

ଶ୍ରୀ ଶ୍ରୀ ମାଅ ବୃନ୍ଦାବନରେ ଦ୍ୱିତୀୟ ଥର ହାତରୁ ବଳା ଖୋଲିବାକୁ ଚେଷ୍ଟା କଲାବେଳେ ସେହିପରି ଠାକୁର ଦର୍ଶନ ଦେଇ ନିଷେଧ କରି କହିଲେ, "ତୁମ୍ଭେ ହାତରୁ ବଳା ଖୋଲନାହିଁ, ଯାହାର ଶ୍ରୀକୃଷ୍ଣ ପତି ତାହାର ବୈଧବ୍ୟ ନାହିଁ, ସେ ଚିର ସଧବା । ତୁମ୍ଭେ ଗୌରୀ ମାଅ (ଜଣେ ନୈଷ୍ଠିକା ସ୍ତ୍ରୀ ଭକ୍ତ)ଙ୍କ ଠାରୁ ବୈଷ୍ଣବ ଶାସ୍ତ୍ର ଜାଣିନେବ । ସେ ତୁମ୍ଭଙ୍କୁ ବୁଝାଇ ଦେବେ ।" ତୃତୀୟ ଥର କାମାର ପୁକୁରରେ ମାଅ ଥିବାବେଳେ ଲୋକ ସମାଜ ଭୟରେ ହାତରୁ

ବଲା ଖୋଲିବା ବେଳେ ସେହିପରି ଠାକୁର ଦେଖା ଦେଇ ନିଷେଧ କଲେ । ତିନି ତିନି ଥର ଏହିପରି ଠାକୁର ଦର୍ଶନ ଦେଇ ନିଷେଧ କରିବାରୁ ମାଆ ସେଥିରୁ ନିବୃତ୍ତ ହେଲେ । ତଦବଧି ଆଉ ମନରେ କୌଣସି ଦ୍ୱିଧା ନ ରଖି ଦେହରୁ ଅନ୍ୟାନ୍ୟ ଅଳଙ୍କାର ଛାଡ଼ି କେବଳ ମାତ୍ର ସରୁ କଙ୍କଣ ଦୁଇଟି ଦୁଇ ହାତରେ ରଖିଥିଲେ ।

## ତୀର୍ଥ ଦର୍ଶନ ଓ ତପସ୍ୟା

ସୁଦୀର୍ଘ ପନ୍ଦରବର୍ଷ କାଳ ଠାକୁରଙ୍କ ସେବା ଓ ସାଧନାରେ ଶ୍ରୀ ଶ୍ରୀ ମାଆ ମଗ୍ନ ଥିଲେ । ତାହାଙ୍କ ନିକଟରେ ରହି ପରମାନନ୍ଦରେ ଦିନ ଗୁଡ଼ିକ ଅତିବାହିତ କରିଥିଲେ । ଏକମାତ୍ର ଆଶ୍ରସ୍ଥଳ ଠାକୁରଙ୍କୁ ହରାଇ ବର୍ତ୍ତମାନ ସେ ଶୋକାକୁଳା ହୋଇ ପଡ଼ିଲେ । ତାହାଙ୍କୁ ଦୃଶ୍ୟ-ଜଗତ୍ ଶୂନ୍ୟ ବୋଧ ହେଲା, ହୃଦୟ ଏକାବେଳକେ ଭାଙ୍ଗି ପଡ଼ିଲା, ମନରେ ପୂର୍ବ ଉତ୍ସାହ ରହିଲା ନାହିଁ, ଦେହ ରକ୍ଷା କରିବା ମଧ୍ୟ କଠିନ ହେଲା । ବେଳେବେଳେ ଦିବ୍ୟ ଶରୀରରେ ଠାକୁରଙ୍କୁ ସାକ୍ଷାତ କରି ସେ ସାନ୍ତ୍ୱନା ଲଭ କରୁଥିଲେ ମଧ୍ୟ ଠାକୁରଙ୍କୁ ସଶରୀରରେ ଦର୍ଶନ କରି ଯେଉଁ ସ୍ୱର୍ଗୀୟ ଆନନ୍ଦ ଉପଲବ୍ଧି କରୁଥିଲେ ତାହା ଆଉ ତାଙ୍କ ପକ୍ଷରେ ସମ୍ଭବ ହେଲା ନାହିଁ । ତେଣୁ ଶ୍ରୀ ଶ୍ରୀ ମାଆ ବୃନ୍ଦାବନାଦି ତୀର୍ଥ ସ୍ଥାନରେ କିଛିକାଳ କଟାଇବାକୁ ମନସ୍ଥ କଲେ ।

ଶ୍ରୀ ବୃନ୍ଦାବନ ଶ୍ରୀକୃଷ୍ଣଙ୍କ ଲୀଳା ଭୂମି—ତହିଁର ପ୍ରତ୍ୟେକ ଧୂଳି କଣାରେ ତାହାଙ୍କ ସ୍ମୃତି ଜଡ଼ିତ, ବିଭିନ୍ନ ଦେବମନ୍ଦିରରେ ପରିପୂର୍ଣ୍ଣ, ପୁଣି ତପସ୍ୱୀ, ସାଧୁ, ବୈଷ୍ଣବ, ଭକ୍ତଙ୍କ ଦ୍ୱାରା ପୂଜିତ, ନାମକୀର୍ତ୍ତନରେ

ସର୍ବଦା ମୁଖରିତ । ସେଠାକୁ ଗଲେ ବିରହ ବେଦନାର ଉପଶମ ହୋଇ ପାରେ ଭାବି କେତେକ ଭକ୍ତଙ୍କୁ ସଙ୍ଗରେ ନେଇ ଶ୍ରୀ ଶ୍ରୀ ମାଆ ଯାତ୍ରାକଲେ । ଠାକୁରଙ୍କ ଅଦର୍ଶନରେ ଶ୍ରୀ ଶ୍ରୀ ମାଆ ଯେପରି ଅତ୍ୟନ୍ତ ବ୍ୟଥିତ ସେହିପରି ତାହାଙ୍କ ଭକ୍ତଗଣ ମଧ୍ୟ ବିଷାଦମଗ୍ନ । ଜୀବନର କର୍ଣ୍ଣଧାର ଶ୍ରୀ ଗୁରୁଦେବଙ୍କୁ ହରାଇ ତ୍ୟାଗୀ ଯୁବକ ଓ ଭକ୍ତମାନେ ବିଶେଷ ଭାବରେ ଚିନ୍ତିତ । ଶ୍ରୀ ଗୁରୁଦେବଙ୍କ ନିର୍ଦ୍ଦେଶାନୁଯାୟୀ ଉପଦେଶ ଗୁଡ଼ିକ ଜୀବନରେ ପାଳନ କରି କିପରି ଶ୍ରୀ ଭଗବାନଙ୍କୁ ପ୍ରତ୍ୟକ୍ଷ କରି ପାରିବେ—ଏହାହିଁ ସେମାନଙ୍କର ପ୍ରଧାନ କର୍ତ୍ତବ୍ୟ ହେଲ । ତାହାଙ୍କୁ ଲାଭ କରିବା ଉଦ୍ଦେଶ୍ୟରେ ବ୍ୟାକୁଳ ହୋଇ ସେମାନେ ନାନା ତୀର୍ଥ ଓ ତପସ୍ୟା କ୍ଷେତ୍ରକୁ ଧାଇଁଲେ । ସେମାନଙ୍କ ମଧ୍ୟରୁ ସ୍ୱାମୀ ଯୋଗାନନ୍ଦ, ଅଭେଦାନନ୍ଦ, ଅଦ୍ଭୁତାନନ୍ଦ, ଶ୍ରୀମତୀ ଲକ୍ଷ୍ମୀମଣି, ଗୋଲାପମା, ନିକୁଞ୍ଜ ଦେବୀ (ଶ୍ରୀମ—ମାଷ୍ଟର ମହାଶୟଙ୍କ ସ୍ତ୍ରୀ) ପ୍ରଭୃତି ଶ୍ରୀ ଶ୍ରୀ ମାଅଙ୍କ ସଙ୍ଗରେ ବୃନ୍ଦାବନ ଗଲେ । ସେମାନେ ଠାକୁରଙ୍କ ଦେହାବସାନର ପନ୍ଦରଦିନ ପରେ ଶ୍ରୀ ବୃନ୍ଦାବନାଭିମୁଖେ ଯାତ୍ରାକରିବା ବେଳେ ରାସ୍ତାରେ ବୈଦ୍ୟନାଥ, କାଶୀ, ଅଯୋଧ୍ୟା ଦର୍ଶନ କରିଥିଲେ ।

ଶ୍ରୀ ଶ୍ରୀ ମାଅ କାଶୀଧାମରେ ତିନିଦିନ ରହିଥିଲେ । ବିଶ୍ୱନାଥଙ୍କ ଆରତି ଦର୍ଶନ କଲାବେଳେ ତାହାଙ୍କର ଭାବ ସମାଧି ହୋଇଥିଲା । ସେଦିନ ଫେରିବାବେଳେ ଅତିକଷ୍ଟରେ ଭାବ ସମ୍ବରଣ କରି ନିଜ ବସାକୁ ଆସି ବିଛଣାରେ ଶୋଇ ପଡ଼ିଥିଲେ । କିଛିକ୍ଷଣ ପରେ ପ୍ରକୃତିସ୍ଥ ହୋଇ ସେ କହିଲେ—'ଠାକୁରେ ମୋର ହାତ ଧରି ମନ୍ଦିରରୁ ନେଇ ଆସିଲେ' । କାଶୀରୁ ଅଯୋଧ୍ୟାକୁ ଗଲେ । ସେଠାରେ ଦିନେ ମାତ୍ର ରହିଥିଲେ । ସେଠାରୁ ଶ୍ରୀ ବୃନ୍ଦାବନାଭିମୁଖେ ଯାତ୍ରା

କଲାବେଳେ ଗାଡ଼ିରେ ଅର୍ଦ୍ଧନିମଗ୍ନ ସ୍ୱାବସ୍ଥାରେ ସେ ଠାକୁରଙ୍କ ଦର୍ଶନ ଲାଭ କରିଥିଲେ ।

ସାଧନ କଲାବେଳେ ଠାକୁରଙ୍କ ଗାତ୍ର ଦାହ (ପ୍ରେମୋନ୍ମାଦ) ଉପସ୍ଥିତ ହୋଇଥିଲା । ଗାତ୍ରଦାହ ଉପଶମ ନିମନ୍ତେ ସୁବର୍ଣ୍ଣନିର୍ମିତ ଇଷ୍ଟକବଚ ତାହାଙ୍କୁ ବାହାରେ ଧାରଣ କରିବାକୁ ପଡ଼ିଥିଲା । କାଶୀପୁରରେ ପୀଡ଼ିତ ଥିଲାବେଳେ ଶ୍ରୀ ରାମକୃଷ୍ଣଦେବ ବାହୁରୁ ଇଷ୍ଟକବଚ କାଢ଼ି ଶ୍ରୀ ଶ୍ରୀ ମାଆଙ୍କୁ ଦେଇଥିଲେ । ମାଆ ସେହିଦିନରୁ ତାହା ନିଜ ବାହୁରେ ଧାରଣ କରି ଯଥାବିଧି ସେବା ପୂଜା କରୁଥାନ୍ତି । ସେହି କବଚ ପିନ୍ଧି ରେଲଗାଡ଼ିରେ ଶୋଇଥିବାବେଳେ ତାହାଙ୍କ ହାତ ବାହାରକୁ ଥିଲା । ସେଠାରେ ଠାକୁର ତାହାଙ୍କୁ ଦର୍ଶନଦେଇ କହିଲେ—'ଅଯେ ! ହାତରେ ସୁନାର ଇଷ୍ଟକବଚଟି ଏପରିଭାବରେ ରଖିଛ କାହିଁକି ? ଚୋର ଯେ ତାହାକୁ ଅନାୟାସରେ ନେଇପାରେ' । ଶ୍ରୀ ଶ୍ରୀ ମାଆ ନିଦରୁ ଚମକି ଉଠି କବଚ ଖଣ୍ଡିକ ହାତରୁ ଖୋଲି ନିତ୍ୟପୂଜିତ ଠାକୁରଙ୍କ ଛବି ଯେଉଁ ବାକ୍ସରେ ଥିଲା ତାକୁ ସେଥିରେହିଁ ରଖିଲେ । ତଦବଧି ସେ ଆଉ କେବେ ସେହି ଇଷ୍ଟକବଚ ହାତରେ ଧାରଣ କରି ନ ଥିଲେ* ।

ଶ୍ରୀ ବୃନ୍ଦାବନରେ ପହଞ୍ଚିବା ମାତ୍ରେ ଶ୍ରୀ ମାଆ ବିରହ ବେଦନାରେ ଅଭିଭୂତା ହୋଇ ପଡ଼ିଲେ । ତାହାଙ୍କର ଶୋକସିନ୍ଧୁ ଉଚ୍ଛୁଳି ପଡ଼ିଲା, ସେ ଆଉ ଅଶ୍ରୁ ଧରି ପାରିଲେ ନାହିଁ । ଶ୍ରୀଯୁକ୍ତା ଯୋଗୀନମାଆଙ୍କ

* ଶ୍ରୀ ଶ୍ରୀ ମାଆ ସେହି କବଚଟି ବହୁଦିନ ପୂଜା କରିବା ପରେ ବେଲୁଡ଼ ମଠର ଠାକୁରଙ୍କ ଘରେ ରଖି ପୂଜା କରିବାଲାଗି ସ୍ୱାମୀ ପ୍ରେମାନନ୍ଦ ମହାରାଜଙ୍କୁ ଦେଇଥିଲେ । ସେଠାରେ ତାହା ବହୁକାଳ ପୂଜା ପାଉଥିଲା । ଦୁର୍ଭାଗ୍ୟ ଯେ ସେଠାରୁ ମଧ୍ୟ ସେହି ଇଷ୍ଟକବଚଟି ଚୋରି ହୋଇଯାଇଛି ।

(ଠାକୁରଙ୍କ ଉକ୍ତି) ଶୁଣାଇ ସେ ଅବିରଳ ଅଶ୍ରୁଧାର ବିସର୍ଜନ କଲେ । ତାହାଙ୍କର ଏପରି ପ୍ରେମୋଚ୍ଛ୍ୱାସ ହେଲା ଯେ ନିଜକୁ ସମ୍ଭାଳିବା ତାଙ୍କ ପକ୍ଷରେ କଷ୍ଟକର ହେଲା । ଯେପରି ଶ୍ରୀମତୀ ରାଧାରାଣୀ ପ୍ରାଣର ପ୍ରାଣ ଶ୍ରୀକୃଷ୍ଣଙ୍କ ବିରହରେ ପାଗଳିନୀ ହୋଇ ତାହାଙ୍କୁ ପାଇବା ସକାଶେ ସର୍ବଦା ବିଚରଣ କରି ଅଶ୍ରୁଧାରରେ ବ୍ରଜଭୂମିର ପ୍ରତ୍ୟେକ ଧୂଳିକଣାକୁ ସିକ୍ତ କରିଦେଇଥିଲେ, ସେହିପରି ଶ୍ରୀ ରାମକୃଷ୍ଣ ଦେବଙ୍କ ଅଦର୍ଶନ-କାତର ଜନନୀ ସାରଦା ପ୍ରେମାଶ୍ରୁ ବିସର୍ଜନ କରି କରି ସେଠାରେ ବର୍ଷେକାଳ ରହି ପଦବ୍ରଜରେ ସମସ୍ତ ବ୍ରଜମଣ୍ଡଳ ପରିକ୍ରମା କରି-ଥିଲେ । ବୃନ୍ଦାବନରେ ସେ ଏକାକିନୀ ଦେବ ମନ୍ଦିର ବା ଯମୁନାକୁ ଯାଉଥାନ୍ତି । ସମସ୍ତଙ୍କ ଅଲକ୍ଷରେ କେଉଁଠି ନିର୍ଜନରେ ବସି ଶ୍ରୀମତୀ ରାଧାରାଣୀଙ୍କ ଭାବରେ ତନ୍ମୟ ଥାନ୍ତି । ସଙ୍ଗିନୀଗଣ ବହୁ ଅନୁସନ୍ଧାନ କରି ସେଠାରୁ ତାହାଙ୍କୁ ଫେରାଇ ଆଣୁଥାନ୍ତି । ବୃନ୍ଦାବନରେ ତାହାଙ୍କର ଅଭିନବ ଭାବାବେଶ ଦେଖା ଯାଉଥିଲା । ସେ ଠିକ ଗୋଟିଏ ଛୋଟ ବାଳିକା ପରି ହୋଇଯାଇଥିଲେ । ତାହାଙ୍କ ବାହ୍ୟ ଆଚାର ବ୍ୟବହାର ସରଳ ଓ ମଧୁର ଥିଲା । ପ୍ରତ୍ୟହ ବୁଲି ବୁଲି ମନ୍ଦିରରେ ସେ ବିଗ୍ରହ ଦର୍ଶନ କରୁଥାନ୍ତି । କ୍ରମେ କ୍ରମେ ନିଜ ଖାଇବା ପିଇବାଠାରୁ ଆରମ୍ଭ କରି ସବୁ ବିଷୟରେ ସେ ଉଦାସୀନ ହୋଇ-ପଡ଼ିଥିଲେ । ବୃନ୍ଦାବନରେ ଶ୍ରୀ ଶ୍ରୀ ମାଆଙ୍କ ଭାବ ଯେଉଁମାନେ ଦେଖିଥିଲେ ଓ ସଙ୍ଗିନୀ ଥିଲେ ସେମାନେହିଁ ଏହାର ସାକ୍ଷ୍ୟ ଦେଇ ଯାଇଛନ୍ତି । ବଂଶୀବଟର ନିକଟ କାଲାବାବୁଙ୍କ କୁଞ୍ଜରେ ସେ ବାସ କରିଥିଲେ । ଦିନେ ସେ ଏପରି ଗଭୀର ସମାଧିରେ ମଗ୍ନ ହୋଇଗଲେ ଯେ ଯୋଗୀନମାଆ ଅନେକକ୍ଷଣ ଧରି ନାମ ଶୁଣାଇଲେ ମଧ୍ୟ ସମାଧି ଭଙ୍ଗ ହେଲାନାହିଁ । ତାପରେ ସ୍ୱାମୀ ଯୋଗାନନ୍ଦ ଅସ୍ମି ସମାଧି ଭଙ୍ଗ କରାଇବା ପ୍ରଣାଳୀ ଅନୁସାରେ ନାମ ଶୁଣାଇବାରୁ ତାହାଙ୍କର ଚେତା

ଆସିଲା । ଭାବର କିଞ୍ଚିତ୍ ଉପଶମ ହେଲା ଉତ୍ତାରୁ ସେ କହିଲେ—
'ମୋ ଉପରେ ଠାକୁରଙ୍କ ଆଦେଶ ହୋଇଥିଲା' ।

ସେହି ବୃନ୍ଦାବନରେ ଶ୍ରୀ ଶ୍ରୀ ମାଆ ସ୍ୱାମୀ ଯୋଗାନନ୍ଦଙ୍କୁ ଦୀକ୍ଷା ଦେଇଥିଲେ । ଏଥିପୂର୍ବରୁ ଦୀକ୍ଷା ଦେବା ଦୂରରେ ଥାଉ ଅତ୍ୟନ୍ତ ଲଜ୍ଜାଶୀଳା ଥିବାରୁ କାହାର ସଙ୍ଗରେ ବାକ୍ୟାଳାପ କରିବାକୁ ମଧ୍ୟ ସେ ସଂକୋଚ ବୋଧ କରୁଥିଲେ । ଦୀକ୍ଷାଦେବାର ପ୍ରଧାନ କାରଣ ହେଲା—ଠାକୁରଙ୍କ ଆଦେଶ । ଶ୍ରୀ ବୃନ୍ଦାବନରେ ଅବସ୍ଥାନ ବେଳେ ଠାକୁର ଦିବ୍ୟଶରୀରରେ ମାଆଙ୍କୁ ଦେଖା ଦେଇ କହିଲେ, 'ଏହି ଇଷ୍ଟ ମନ୍ତ୍ର ସ୍ୱାମୀ ଯୋଗାନନ୍ଦଙ୍କୁ ଦିଅ' । ତାହାଙ୍କ ଆଦେଶ ଜାଣି ମଧ୍ୟ ସେ ସଂକୋଚ ବୋଧ କରି ଭାବିଲେ, କିପରି ତାହାଙ୍କୁ ମନ୍ତ୍ର ଦେବି । ଠାକୁର ସନ୍ତାନଙ୍କ ସଙ୍ଗରେ ପୁଣି ଅଳ୍ପ ପର୍ଯ୍ୟନ୍ତ ଉତ୍ତଣା ଖୋଲି କଥା କହୁନାହିଁ । ଠାକୁର ପୁନର୍ବାର ଦ୍ୱିତୀୟ ଥର ଦର୍ଶନ ଦେଇ କିପରି ମନ୍ତ୍ର ଦେବାକୁ ହେବ ତାହା ମଧ୍ୟ କହିଲେ । ତଥାପି ଲଜ୍ଜାବଶତଃ ମାଆ ଦୀକ୍ଷା ଦେବାକୁ ଅଗ୍ରସର ହେଲେ-ନାହିଁ । ତୃତୀୟ ଥର ପୂର୍ବପରି ଠାକୁର ଦର୍ଶନ ଦେଇ ମାଆଙ୍କୁ ଆଦେଶ ଦେବାରୁ ଯୋଗୀନ ମାଆଙ୍କ ମାଧ୍ୟମରେ ସ୍ୱାମୀ ଯୋଗାନନ୍ଦଙ୍କୁ ଡାକି ଆଣି ପୂଜା କରୁ କରୁ ଭାବାବିଷ୍ଟ ହୋଇ ଦୀକ୍ଷା ପ୍ରଦାନ କଲେ । କହିବାକୁ ଗଲେ, ଏହାହିଁ ତାହାଙ୍କ ଦୀକ୍ଷାର ସୂତ୍ର-ପାତ ଏବଂ ସ୍ୱାମୀ ଯୋଗାନନ୍ଦ ମାଆଙ୍କର ପ୍ରଥମ ଶିଷ୍ୟ ଓ ପ୍ରଧାନ ସେବକ ।

ଶ୍ରୀ ବୃନ୍ଦାବନରେ ଅବସ୍ଥାନ କାଳରେ ଶ୍ରୀ ଶ୍ରୀ ମାଆ ଠାକୁରଙ୍କ ଦର୍ଶନ ପୁନଃପୁନଃ ପାଉଥାନ୍ତି । ଏହି ସାକ୍ଷାତ ଫଳରେ ତାହାଙ୍କର ଯେଉଁ ବିରହ ବେଦନା ଥିଲା ତାହା ଯେ କିଞ୍ଚିତ ଲାଘବ ହୋଇଥିଲା ତାହା ବୁଝାଯାଏ।

ହୋଇଥିଲା ତାହା କହିବା ବାହୁଲ୍ୟ ମାତ୍ର । ଠାକୁର ତାହାଙ୍କର ଅଭିଳାଷ ପୂର୍ଣ୍ଣ କରିଥିଲେ ଏବଂ ସେଠାରେ ତାହାଙ୍କୁ ଅଲୌକିକ ଅପ୍ରାକୃତ ପ୍ରେମର ଅଧିକାରିଣୀ କରିଥିଲେ, ଏଥିରେ ଅତ୍ୟୁକ୍ତି ନାହିଁ । ସେଠାରୁ କିଛିଦିନ ଲାଗି ଯୋଗୀନମାଆ, ଶ୍ରୀମତୀ ଲକ୍ଷ୍ମୀମଣି ଓ ସ୍ୱାମୀ ଯୋଗାନନ୍ଦଙ୍କୁ ସଙ୍ଗରେ ଘେନି ଶ୍ରୀ ଶ୍ରୀ ମାଆ ହରିଦ୍ୱାର ଓ ପୁଷ୍କର ଗମନ କଲେ । ମାଆ ତୀର୍ଥ ସ୍ଥଳରେ ନିକ୍ଷେପ କରିବା ଲାଗି ଶ୍ରୀ ରାମକୃଷ୍ଣ ଦେବଙ୍କର ଯେଉଁ ନଖ ଓ କେଶ ଆଣିଥିଲେ ସେହି ନଖ ଓ କେଶରୁ କିଛି ଅଂଶ ହରିଦ୍ୱାର ବ୍ରହ୍ମକୁଣ୍ଡରେ, ଅବଶିଷ୍ଟ ବୃନ୍ଦାବନରୁ ଫେରିବା ପଥରେ ପ୍ରୟାଗ—ଗଙ୍ଗା ଯମୁନା ସଙ୍ଗମ ସ୍ଥଳରେ ନିକ୍ଷେପ କଲେ ।

ଶ୍ରୀ ଶ୍ରୀ ମାଆ ବୃନ୍ଦାବନରୁ ଆସି ଠାକୁରଙ୍କ ପରମ ଭକ୍ତ ଶ୍ରୀଯୁକ୍ତ ବଳରାମ ବସୁଙ୍କ ଘରେ କେତେ ଦିନ ମାତ୍ର ରହି କାମାରପୁକୁର ଯାଆକଲେ । ସେଠାରେ ତାହାଙ୍କ ଅର୍ଥକଷ୍ଟର ସୀମା ରହିଲା ନାହିଁ । ଅର୍ଥାଭାବ ବଶତଃ କେଉଁ କେଉଁ ଦିନ ଭାତ ସାଗକୁ ଟିକିଏ ଲୁଣ ମିଳୁ ନଥିଲା । ରାଣୀ ରାସମଣୀଙ୍କ ଦୌହିତ୍ର ଶ୍ରୀ ତ୍ରୈଲୋକ୍ୟନାଥ ବିଶ୍ୱାସ ମାଆଙ୍କୁ ମାସକୁ ସାତଟି ଟଙ୍କା ଦେଉଥିଲେ । ଠାକୁରଙ୍କ ଦେହ ରକ୍ଷା କରିବା ପରେ ତାହା ମଧ୍ୟ ସେ ବନ୍ଦ କରି ଦେଲେ । ଏହି ସମୟରେ ମାଆଙ୍କୁ ବହୁତ କଷ୍ଟ ସହିବାକୁ ପଡ଼ିଥିଲା । କିନ୍ତୁ ଦୁଃଖ କଷ୍ଟରେ ଚିରକାଳ ଅଭ୍ୟସ୍ତ ଥିବାରୁ ସେଥିପ୍ରତି ଆଦୌ ଦୃଷ୍ଟି ନ ଦେଇ ଠାକୁରଙ୍କ ଚିନ୍ତାରେ ସେ ତନ୍ମୟ ରହୁଥିଲେ । ଶ୍ରୀ ଶ୍ରୀ ଠାକୁରଙ୍କ ଅଦର୍ଶନ ହିଁ ତାହାଙ୍କ ପକ୍ଷରେ ସର୍ବାପେକ୍ଷା ଅଧିକ କଷ୍ଟର ବିଷୟ ଥିଲା । ଯେତେବେଳେ ମାଆ ଚରମ ଦୁଃଖ-କଷ୍ଟ-ଅଭାବ-ଅନାଟନରେ ପଡୁଥାନ୍ତି ସେତେବେଳେ ଠାକୁରେ ଅଭୟ ହସ୍ତ

ପ୍ରସାରଣ କରି ତାଙ୍କୁ ସେଥିରୁ ରକ୍ଷା କରୁଥାନ୍ତି । ବେଳେ ବେଳେ ତାହାଙ୍କୁ ଦର୍ଶନ ଦେଇ ଉପଦେଶ ଦ୍ୱାରା ତାଙ୍କର ଆନନ୍ଦ ବିଧାନ କରୁଥାନ୍ତି ।

ଶ୍ରୀ ଶ୍ରୀ ମାଆ ଏତେ ଅଭାବ-ଅନାଟନରେ କାଳ କଟାଉଥିଲେ ମଧ୍ୟ ଠାକୁରଙ୍କ ତ୍ୟାଗୀ ସନ୍ନ୍ୟାସୀଗଣ ତପସ୍ୟାରେ ନିରତ ଥିବାରୁ କିଛି ଜାଣି ପାରୁ ନଥାନ୍ତି । ସେମାନେ ଜାଣିଲା ଉତ୍ତାରୁ ଅଳ୍ପରେ ତାହାଙ୍କର ସୁବନ୍ଦୋବସ୍ତ କରିଥିଲେ । ସେମାନେ ମାଆଙ୍କୁ ଆଣି କଲିକତାରେ ବସା ଭଡ଼ାକରି ରଖାଇଲେ । ମାଆ ସାଧାରଣତଃ ଗଙ୍ଗାତୀରରେ, ବେଲୁଡ଼ରେ, ବାଗ ବଜାରରେ ଘର ଭଡ଼ାକରି ରହୁଥାନ୍ତି । ମାଆ ପିଲବେଳରୁ ଗଙ୍ଗା ସ୍ନାନ କରିବାକୁ ଭଲ ପାଆନ୍ତି ଏବ ଗଙ୍ଗା ନିକଟରେ ଘର ଭଡ଼ା ହେଲେ ସ୍ନାନ କରିବାକୁ ଅସୁବିଧା ହେବନାହିଁ ଜାଣି ତାହା ସେ ପସନ୍ଦ କରୁଥାନ୍ତି । ବେଳେ-ବେଳେ ବା ପରମ ଭକ୍ତ (ଶ୍ରୀ ରାମକୃଷ୍ଣଙ୍କ କଥାମୃତ ପ୍ରଣେତା) ଶ୍ରୀମ— (ଶ୍ରୀଯୁକ୍ତ ମହେନ୍ଦ୍ରନାଥ ଗୁପ୍ତ) ଓ ବଳରାମ ବସୁଙ୍କ ଆମନ୍ତ୍ରଣରେ ସେମାନଙ୍କ ଘରେ ସେ ରହୁଥାନ୍ତି । କିଛିଦିନ ଏହିପରି କଟାଇବା ପରେ ସ୍ୱାମୀ ସାରଦାନନ୍ଦ [ରାମକୃଷ୍ଣ ମିଶନର ସମ୍ପାଦକ]ଙ୍କ ଏକାନ୍ତ ଚେଷ୍ଟା ଫଳରେ ବାଗବଜାରରେ ଗୋଟିଏ ନୂତନ ଘର ତୋଳା-ଗଲା । ସେହି ଘର ମାଆଙ୍କ ନାମରେ ଉତ୍ସୃଷ୍ଟ ହେଲା ଏବ ସେଠାରେ ତାହାଙ୍କୁ ରଖାଗଲା । ତଦବଧି ଆଉ ଘର ବଦଳାଇବାକୁ ହେଲା ନାହିଁ । ସ୍ଥାୟୀ ଭାବରେ ସେଠାରେ ସେ ବାସକଲେ । ଏତଦ୍‌ଭିନ୍ନ ମାଆଙ୍କ ପିତାଳୟ ଜୟରାମବାଟୀରେ ମଧ୍ୟ ଗୃହୀ ଭକ୍ତ ଓ ସ୍ୱାମୀ ସାରଦାନନ୍ଦଙ୍କ ଚେଷ୍ଟାରେ ନୂତନ ଘର ନିର୍ମିତ ହେଲା । କଲିକତାକୁ ଆସିଲେ ବାଗବଜାରରେ ନବନିର୍ମିତ ଘରେ ଏବଂ ଜୟରାମ

ବାଟୀକୁ ଗଲେ ସେଠୁ ନବନିର୍ମିତ ଘରେ ଶ୍ରୀ ଶ୍ରୀ ମାଆ ବାସ କରିବାକୁ ଲାଗିଲେ ।

୧୮୮୮ ଖ୍ରୀଷ୍ଟାବ୍ଦରେ କତିପୟ ସନ୍ନ୍ୟାସୀଙ୍କ ସଙ୍ଗରେ ( ରାମକୃଷ୍ଣ ମିଶନର ସନ୍ନ୍ୟାସୀ ) ଶ୍ରୀ ଶ୍ରୀ ମାଆ ପୁରୀଧାମକୁ ଗଲେ । ସେତେବେଳେ ପୁରୀ ପର୍ଯ୍ୟନ୍ତ ରେଲଲାଇନ ହୋଇନଥିଲା । ତେଣୁ କଲିକତାରୁ ଜାହାଜରେ ଚାନ୍ଦବାଲି ଆସିଲେ । ସେଠାରୁ ଷ୍ଟୀମରରେ କେନାଲ ବାଟ ଦେଇ କଟକ ଆସି ପ୍ରସିଦ୍ଧ ଉକିଲ ଶ୍ରୀଯୁକ୍ତ ହରବଲ୍ଲଭ ବସୁଙ୍କ କୋଠୀରେ ଥିଲେ । ସେହି କୋଠୀ ବର୍ତ୍ତମାନ ବାଳିକା ବିଦ୍ୟାଳୟ ହୋଇଅଛି । କଟକରୁ ବଳଦ ଗାଡ଼ିରେ ପୁରୀ ଯାଇ ସେଠାରେ ପରମ ଭକ୍ତ ବଳରାମ ବସୁଙ୍କ କ୍ଷେତ୍ରବାସୀ ମଠରେ ମାର୍ଗଶିର ଠାରୁ ଫାଲ୍‌ଗୁନ ପର୍ଯ୍ୟନ୍ତ ଶ୍ରୀ ଶ୍ରୀ ମାଆ ବାସକରିଥିଲେ । ପୁରୀରେ ବଳରାମ ବସୁଙ୍କ ବିଶେଷ ପ୍ରତିପତ୍ତି ଥିଲା । ତେଣୁ ତାହାଙ୍କ ଗୁରୁ ପରମାରାଧ୍ୟା ଶ୍ରୀ ଶ୍ରୀ ମାଆଙ୍କୁ ପଣ୍ଡା ଗୋବିନ୍ଦ ଶିଙ୍ଗାରୀ ଜଗନ୍ନାଥ ମନ୍ଦିର ଦର୍ଶନ ନିମନ୍ତେ ବିଶେଷ ଆଡ଼ମ୍ବର ସହିତ ବ୍ୟବସ୍ଥା କରିବାକୁ ଚାହିଁଲେ । ସେଥିରେ ଶ୍ରୀ ଶ୍ରୀ ମାଆ ରାଜି ହେଲେ ନାହିଁ । ସେ ଦୀନହୀନ କାଙ୍ଗାଳିନୀ ଭାବରେ ଜଗନ୍ନାଥ ଦର୍ଶନ କଲେ । ପଣ୍ଡା ଗୋବିନ୍ଦ ଶିଙ୍ଗାରୀ ଅତି ଯତ୍ନ ସହିତ ମନ୍ଦିରର ଯାବତୀୟ ଦ୍ରଷ୍ଟବ୍ୟ ତାହାଙ୍କୁ ଦେଖାଇଥିଲେ ।

ଶ୍ରୀ ରାମକୃଷ୍ଣପରମହଂସଦେବ ପୁରୀଧାମକୁ ଆସିଲେ ଈଶ୍ୱରଙ୍କ ଉଦ୍ଦୀପନାରେ ସମାଧି ହୋଇ ଶରୀର ତ୍ୟାଗ ହୋଇଯିବ, ତେଣୁ ସେ କେବେ ଏଠାକୁ ଆସି ନ ଥିଲେ । ଏଣେ ଶ୍ରୀ ଶ୍ରୀ ମାଆ ଠାକୁରଙ୍କ ଛବି ନିଜ ବସ୍ତ୍ରାଞ୍ଚଳରେ ଢାଙ୍କି ତାହାଙ୍କୁ ଜଗନ୍ନାଥ ଦର୍ଶନ କରାଇ ଆଣିଲେ । ମାଆ କହୁଥାନ୍ତି,—ଛାୟା, କାୟା; ଘଟ,

ପଟ୍ଟ ସମାନ । ଜଗନ୍ନାଥଙ୍କ ଦର୍ଶନ କରି ଶ୍ରୀ ଶ୍ରୀ ମାଆ କହୁଥିଲେ,—ଜଗନ୍ନାଥଙ୍କୁ ଦେଖିଲି ପୁରୁଷ ସିଂହ—ରତ୍ନ ବେଦିରେ ବସିଛନ୍ତି, ମୁଁ ତାହାଙ୍କ ଦାସୀ ହୋଇ ସେବା କରୁଛି । ସ୍ୱପ୍ନରେ ମଧ୍ୟ ଥରେ ଜଗନ୍ନାଥଙ୍କୁ ଦେଖିଥିଲେ—ଶିବ ମୂର୍ତ୍ତି ରୂପେ ଲକ୍ଷଶିଳା ଉପରେ ସେ ବସିଛନ୍ତି ।

୧୮୯୩ ଖ୍ରୀଷ୍ଟାବ୍ଦରେ ବେଲୁଡ଼ ଗ୍ରାମର ନୀଳାମ୍ବର ମୁଖାର୍ଜିଙ୍କ ଘର ଭଡ଼ା ନେଇ ଶ୍ରୀ ଶ୍ରୀ ମାଆ ବାସ କରୁଥିବାବେଳେ କଠୋର ତପସ୍ୟାରେ ରତ ଥିଲେ । ତାହାଙ୍କ ସଙ୍ଗରେ ପରମା ଭକ୍ତିମତୀ ଯୋଗୀନମାଆ ଓ ଗୌରୀମାଆ ଥିଲେ । ଏଠାରେ ଦୁଷ୍କର ପଞ୍ଚତପା-ବ୍ରତର ଅନୁଷ୍ଠାନ କରିଥିବାରୁ ଶ୍ରୀ ଶ୍ରୀ ମାଆଙ୍କ ଦେହ ପୋଡ଼ାଡାଠ ସରି ହୋଇ ଯାଇଥିଲା । ପଞ୍ଚତପା ବୋଇଲେ—ଖୋଲା ସ୍ଥାନରେ ପାଞ୍ଚଟି ଅଗ୍ନିକୁଣ୍ଡ ଜାଳି ସୂର୍ଯ୍ୟୋଦୟଠାରୁ ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ ବସି ଧ୍ୟାନ ଜପ କରିବା । ଏକଦିଗରେ ଅଗ୍ନିର ତେଜ ଅପରଦିଗରେ ପ୍ରଖର ସୂର୍ଯ୍ୟର ତେଜ ସହିବାକୁ ପଡ଼େ । ପାର୍ବତୀ ଯେପରି ଶିବଙ୍କ ପାଇଁ ଶୀତକାଳରେ ଜଳରେ, ଗ୍ରୀଷ୍ମରେ ଅଗ୍ନିକୁଣ୍ଡ ଜାଳି ଦୁଷ୍କର ତପସ୍ୟା କରିଥିଲେ ସେହିପରି ପଞ୍ଚତପାର ଅନୁଷ୍ଠାନ ଦ୍ୱାରା ଠାକୁରଙ୍କ ଅଦର୍ଶନ—ବିରହ ତାହାଙ୍କର ଦୂର ହୋଇଥିଲା ।

ଏହି ତପସ୍ୟା କାଳରେ ତାହାଙ୍କର ଯେଉଁ ଅଭିନବ ଅଲୌକିକ ଈଶ୍ୱରାନୁଭୂତି ଘଟିଥିଲା ତାହା ସେ ନିମ୍ନଲିଖିତ ରୂପେ କହିଛନ୍ତି—" ଦେଶ [ଜନ୍ମସ୍ଥାନ] ରେ ଥିବାବେଳେ କିଶୋର-ବୟସ୍କା ଏକ ସନ୍ନ୍ୟାସିନୀଙ୍କୁ ଦେଖୁଥିଲି, ତାହାଙ୍କ ମଥାର କେଶ-ଗୁଚ୍ଛ ରୁକ୍ଷ, ଗଳାରେ ରୁଦ୍ରାକ୍ଷମାଳା । ପଞ୍ଚତପାର ଅନୁଷ୍ଠାନବେଳେ ସେହି ସନ୍ନ୍ୟାସିନୀଙ୍କୁ ଦେଖିଲି ଯେ ମୋ ଦେହରେ ମିଶିଗଲେ ।

ଅଭେଦାନନ୍ଦ ଠାକୁରଙ୍କୁ ଦେଖିଲି, ଗଙ୍ଗାରେ ସେ ଅବତରଣ କଲେ, ଅବତରଣ କରିବାମାତ୍ରେ ଠାକୁରେ ଗଙ୍ଗାଜଳରେ ମିଶିଗଲେ । ସ୍ୱାମୀ ବିବେକାନନ୍ଦ 'ଜୟ ରାମକୃଷ୍ଣ' 'ଜୟ ରାମକୃଷ୍ଣ' କହି ସେହି ଗଙ୍ଗାଜଳ ନେଇ ଦୁଇହାତରେ ଛିଞ୍ଚା ହୋଇଥିବା ଅଗଣିତ ଲୋକଙ୍କ ମଥାରେ ସିଞ୍ଚନ କଲେ । ତାହାଦ୍ୱାରା ସେମାନେ ମୁକ୍ତ ହୋଇଗଲେ ।"

ସେହି ଦୃଶ୍ୟ ଶ୍ରୀ ଶ୍ରୀ ମାଆଙ୍କ ହୃଦୟରେ ଗଭୀର ରେଖାପାତ କରିଥିଲା । ଠାକୁରଙ୍କ ଦେହରେ ତାଙ୍କ ସ୍ପର୍ଶ ହେବା ଉପରେ ସେ କେତେଦିନ ଗଙ୍ଗାରେ ସ୍ନାନ କରି ନ ଥିଲେ । ଅଭେଦାନନ୍ଦ ଘାଟରେ ଘାଟ ଉପରେ ବସି ଧ୍ୟାନ କରୁଥିବାବେଳେ ତାହାଙ୍କର ଗଭୀର ସମାଧି ହୋଇଥିଲା । ସମାଧିଭଙ୍ଗ ହେଲା ପରେ ସୁଦ୍ଧା କିଛିଦିନ ସେହି ଭାବର ଆବେଶ ଥିଲା । ସେଠାରେ ଯୋଗୀନ ମାଆ ଓ ଗୋଲାପ ମାଆ ଥିଲେ ।

୧୯୦୯ ଖ୍ରୀଷ୍ଟାବ୍ଦରେ ପରମଭକ୍ତ ବଳରାମ ବସୁଙ୍କ ଆମନ୍ତ୍ରଣରେ ଶ୍ରୀ ଶ୍ରୀ ମାଆ କୋଠାରକୁ ଆସିଥିଲେ । ସେ ୧୮ ତାରିଖ ମାର୍ଗଶିର ମାସରେ ସେଠାରେ ପହଞ୍ଚିଲେ । ଜଳେଶ୍ୱରରେ ଭଦ୍ରଖ ନିକଟରେ କୋଠାର ଅବସ୍ଥିତ । ତାହା ବସୁମହାଶୟଙ୍କ ଜମିଦାରୀ । ସେଠାରେ ଶ୍ରୀ ଶ୍ରୀ ମାଆ ଦୁଇମାସରୁ ଅଧିକ କାଳ ବାସ କରିଥିଲେ । ସେଠାରେ ସରସ୍ୱତୀ ପୂଜା ଉପଲକ୍ଷେ ତାଙ୍କ ସାମନାରେ ଉତ୍କଳ ଦେଶୀୟ ଯାତ୍ରା-ଗୀତ ହେଲା । ରାଧାକୃଷ୍ଣ ବେଶ-ଧାରୀ ନାଟୁଆ ପିଲାଙ୍କ ଅପୂର୍ବ ନୃତ୍ୟ ଗୀତ ଶ୍ରବଣ କରି ମାଆ ମୋହିତା ହୋଇଥିଲେ । ଉତ୍କଳର ପ୍ରାଚୀନ ନୃତ୍ୟ କଳା ଦେଖି ସେ ଏପରି ମୁଗ୍ଧା ହୋଇଥିଲେ ଯେ ପରଦିନ ପୁନରାୟ ସେହି

ଯାହାର ଅନୁଷ୍ଠାନ କରିବାକୁ ପଡ଼ିଲା । ଶ୍ରୀ ଶ୍ରୀ ମାଆଙ୍କ ଆଦେଶା-
ନୁଯାୟୀ ଦ୍ୱିତୀୟ ଦିନ ଯଥାବିଧି ପୂଜା କରି ତୃତୀୟ ଦିନରେ
ପ୍ରତିମା ବିସର୍ଜ୍ଜନ ହେଲା ।

କୋଠାରରେ ବାସକଲାବେଳେ ଶ୍ରୀଶ୍ରୀ ମାଆ କେତେଜଣଙ୍କୁ ଦୀକ୍ଷା
ପ୍ରଦାନ କଲେ । ସେମାନଙ୍କ ମଧ୍ୟରୁ କେତେଜଣ ଜଙ୍ଗଲବାସୀ
ମଧ୍ୟ ଥିଲେ । ତାହାଙ୍କଠାରୁ ଦୀକ୍ଷାସେମାନେ ଗ୍ରହଣ କରି ଜୀବନ ସାର୍ଥକ
କଲେ । ବର୍ତ୍ତମାନ ମଧ୍ୟ ସେମାନଙ୍କ ମଧ୍ୟରୁ କେତେଜଣ ଜୀବିତ ।
ବଙ୍ଗଦେଶୀୟ ପୋଷ୍ଟମାଷ୍ଟର ଦେବେନ୍ଦ୍ର ନାଥ ଚଟ୍ଟୋପାଧ୍ୟାୟ
କୌଣସି କାରଣରୁ ଖ୍ରୀଷ୍ଟଧର୍ମ ଗ୍ରହଣ କରିଥିଲେ । ମାଆଙ୍କୁ ଦର୍ଶନ
କରି ତାହାଙ୍କ ମତି-ଗତି ବଦଳି ଗଲା ଏବଂ ହିନ୍ଦୁଧର୍ମ ପୁନର୍ବାର ଗ୍ରହଣ
କରିବାକୁ ତାଙ୍କର ମନ ବଳିଲା । ସେହିକଥା ମାଆଙ୍କୁ ଜଣାଇବାରୁ
ସେଥିରେ ସେ ଆନନ୍ଦିତା ହେଲେ । ମାଆଙ୍କ ଅନୁମତିରେ କୃଷ୍ଣଲାଲ
ମହାରାଜ (ସ୍ୱାମୀ ଧୀରାନନ୍ଦ) ବଳରାମ ବସୁଙ୍କ ଗୃହଦେବତା ରାଧା-
ଶ୍ୟାମ ଚାନ୍ଦ ଜୀଉଙ୍କ ମନ୍ଦିର ସାମନାରେ ତାହାଙ୍କୁ ପ୍ରାୟଶ୍ଚିତ୍ତ
କରାଇ ଗାୟତ୍ରୀ, ଯଜ୍ଞୋପବୀତ ଦାନ କରି ହିନ୍ଦୁ ଧର୍ମକୁ ଆଣିଲେ ।
ପରଦିନ ଶ୍ରୀ ଶ୍ରୀ ମାଆ ତାହାଙ୍କୁ ଦୀକ୍ଷା ଦେଇ ପ୍ରସାଦ ସ୍ୱରୂପ ଖଣ୍ଡେ
ନୂତନ ବସ୍ତ୍ର ପ୍ରଦାନ କଲେ ।

ସରସ୍ୱତୀ ପୂଜା ପରେ ଦକ୍ଷିଣାଞ୍ଚଳ ରାମେଶ୍ୱର ପ୍ରଭୃତି ତୀର୍ଥ
ଦର୍ଶନ କରିବା ପାଇଁ ଶ୍ରୀ ଶ୍ରୀ ମାଆଙ୍କ ଇଚ୍ଛା ହେଲା ଏବଂ ଆଗ୍ରହ
ପ୍ରକାଶ କରି ସେ କହିଲେ, 'ମୋ ଶ୍ୱଶୁର ଯାଇଥିଲେ ।' ମୋର
ଯିବାକୁ ଇଚ୍ଛା ।' ସେତେବେଳେ ମାନ୍ଦ୍ରାଜରେ ସ୍ୱାମୀ ରାମକୃଷ୍ଣାନନ୍ଦ
ଠାକୁରଙ୍କ ଭାବଧାରା ପ୍ରଚାର କରୁଥାନ୍ତି । ତାହା ଫଳରେ ମାନ୍ଦ୍ରାଜ-
ବାସୀ ବିଶେଷ ଭାବରେ ଠାକୁରଙ୍କ ପ୍ରତି ଆକୃଷ୍ଟ । ସ୍ୱାମୀଜୀଙ୍କ

ତ୍ୟାଗମୟ ଜୀବନ ସେମାନଙ୍କୁ ଗୋଟିଏ ନୂତନ ପ୍ରେରଣା ଯୋଗାଇଦେଇଥିଲା । ସେଠାରେ ଠାକୁରଙ୍କ ନାମରେ ମଠ ସ୍ଥାପିତ ହୋଇଛି । ଶ୍ରୀ ଶ୍ରୀ ମାଙ୍କ ଶୁଭାଗମନ ସଂବାଦ ଚିଠିଦ୍ୱାରା ତାହାଙ୍କୁ ଜଣାଇବାରୁ ସ୍ୱାମୀ ରାମକୃଷ୍ଣାନନ୍ଦ ଅତ୍ୟନ୍ତ ଆନନ୍ଦିତ ହେଲେ ଏବଂ ତାହାଙ୍କ ଆସିବାର ସମସ୍ତ ବ୍ୟବସ୍ଥା କଲେ । ଶ୍ରୀ ଶ୍ରୀ ମାଙ୍କ ସଙ୍ଗରେ ଗଲେ କତିପୟ ସନ୍ନ୍ୟାସୀ ଓ ଭକ୍ତରମଣୀ । ସେମାନେ ମାଘମାସ ଶେଷରେ ଭଦ୍ରକରୁ ରେଲରେ ମାନ୍ଦ୍ରାଜ ଯାତ୍ରା କଲେ । ଯିବାବେଳେ ରାସ୍ତାରେ ଗଞ୍ଜାମ ବା ବ୍ରହ୍ମପୁରରେ ସେମାନଙ୍କୁ ଅବତରଣ କରିବାକୁ ହୋଇଥିଲା । ତା ଛଡ଼ା ସ୍ୱାମୀ ରାମକୃଷ୍ଣାନନ୍ଦଙ୍କ ନିର୍ଦ୍ଦେଶାନୁଯାୟୀ କୌଣସି କୌଣସି ଷ୍ଟେସନରେ କେତେକ ମାନ୍ଦ୍ରାଜବାସୀ ଭକ୍ତ କଦଳୀ, ନଡ଼ିଆ, ଫଳ-ଫୁଲ ଉପହାର ଦେଇ ତାହାଙ୍କୁ ସମ୍ବର୍ଦ୍ଧନା ଜଣାଇଥିଲେ । ମାନ୍ଦ୍ରାଜରେ ଗାଡ଼ି ପହଞ୍ଚିବାର ଅଳ୍ପ ସମୟ ପୂର୍ବରୁ ସ୍ୱାମୀ ରାମକୃଷ୍ଣାନନ୍ଦ ଓ ତଦ୍ଦେଶୀୟ କତିପୟ ଭକ୍ତ ତିନି ଖଣ୍ଡ ମଟରଗାଡ଼ି ନେଇ ଷ୍ଟେସନରେ ଅପେକ୍ଷା କରୁଥିଲେ । ଶ୍ରୀ ଶ୍ରୀ ମାଆ ପହଞ୍ଚିବା ମାତ୍ରେ ସମସ୍ତଙ୍କ ମନରେ ଆନନ୍ଦୋଚ୍ଛ୍ୱାସ ଖେଳିଗଲା । ଏହିଠାରେ ଶ୍ରୀ ଶ୍ରୀ ମାଆ ପ୍ରଥମେ ମଟରଗାଡ଼ିରେ ଚଢ଼ିଲେ । ପୂର୍ବରୁ ତାହାଙ୍କ ବାସ ନିମନ୍ତେ ଘର ଭଡ଼ା ନିଆ ହୋଇଥିଲା । ସେଠାରେ ଯାଇ ଶ୍ରୀ ଶ୍ରୀ ମାଆ ରହିଲେ ।

ମାନ୍ଦ୍ରାଜରେ ପ୍ରାୟ ସେ ଏକମାସ ଥିଲେ । ମାନ୍ଦ୍ରାଜ ଭକ୍ତଗଣ ତାହାଙ୍କୁ ଦର୍ଶନ କରିବା ପାଇଁ ନିତ୍ୟ ଆସୁଥାନ୍ତି । ମହିଳା ବିଦ୍ୟାଳୟର ମହିଳା ମାନଙ୍କ ତାମିଲଭଜନ ଶ୍ରୀ ଶ୍ରୀ ମାଆଙ୍କୁ ଖୁବ ଭଲ ଲାଗିଥିଲା । ମାନ୍ଦ୍ରାଜର କେତେକ ସ୍ତ୍ରୀ ଓ ପୁରୁଷ ତାହାଙ୍କ ଠାରୁ ଦୀକ୍ଷା ନେଲେ । ଶିକ୍ଷିତା ମହିଳାମାନେ ତାହାଙ୍କ ସଙ୍ଗରେ

ବାର୍ତ୍ତାଳାପ କରି ଖୁବ ଖୁସି ହେଉଥିଲେ । ସେମାନଙ୍କ ଭାଷା ବୁଝିବା ମାଆଙ୍କ ପକ୍ଷରେ କଠିନ ହେଲେହେଁ ଅଭାର ଇଙ୍ଗିତରେ ବା ଦ୍ୱିଭାଷୀଙ୍କ ଦ୍ୱାରା ସବୁକାମ ଚଳାଇବାକୁ ଅସୁବିଧା ହେଉନାହିଁ। ଦିନେ ସେମାନେ କହିଲେ, "ମାଆ, ଆପଣ ବକ୍ତୃତା ଦିଅନ୍ତୁ ।" ସେଥିରେ ସେ ହସି ହସି କହିଲେ, 'ମୁଁ ବକ୍ତୃତା ଦେଇ ଜାଣେ ନାହିଁ ।'

ଶ୍ରୀ ଶ୍ରୀ ମାଆ ମାନ୍ଦ୍ରାଜରୁ ମଦୁରା ଗଲେ । ସେଠାରେ ଦିନେ ରହି ସମସ୍ତ ଦେବ ମନ୍ଦିର ଦର୍ଶନ କରି ରାମେଶ୍ୱର ଗଲେ । ରାମେଶ୍ୱର ଦେବ ମନ୍ଦିର ରାଜା ରାମନାଦଙ୍କ ରାଜ୍ୟାନ୍ତର୍ଭୁକ୍ତ । ସେ ସ୍ୱାମୀ ବିବେକାନନ୍ଦଙ୍କ ଶିଷ୍ୟ । ତେଣୁ ଗୁରୁଙ୍କ ଗୁରୁ ପରମ ଗୁରୁ ମାଆ ଆସିଛନ୍ତି ଜାଣି ଦର୍ଶନ ପୂଜା ଅର୍ଚ୍ଚନା କରିବାରେ ଯେପରି କୌଣସି ଅସୁବିଧା ନହୁଏ ତହିଁର ସୁବନ୍ଦୋବସ୍ତ କରିବାକୁ ତାଙ୍କର ସେ ଅବହେଳା କଲେ ନାହିଁ । ଏଥି ପୂର୍ବରୁ ରାମେଶ୍ୱର ମନ୍ଦିରରେ ପୁରୋହିତ ବ୍ୟତୀତ ଅନ୍ୟ କୌଣସି ଯାତ୍ରୀର ପ୍ରବେଶ ବା ଦେବତାଙ୍କୁ ସ୍ପର୍ଶ କରିବା ନିଷେଧ ଥିଲା । କିନ୍ତୁ ମାଅଙ୍କ ପକ୍ଷରେ ତାହା ରହିଲା ନାହିଁ । ମନ୍ଦିରସ୍ଥ ଉଚ୍ଚ କର୍ମଚାରୀ ଗଣଙ୍କୁ ରାଜା ତାର ଯୋଗେ ଜଣାଇଲେ ଯେ 'ମୋର ପରମ ଗୁରୁ ମନ୍ଦିର ଦର୍ଶନ କରିବାକୁ ଯାଉଛନ୍ତି । ସେଠାରେ ସେ ତିନି ଦିନ ରହିବେ, ଏହି ତିନି ଦିନ ଆଉ କେହି ଯାଇ ପାରିବେ ନାହିଁ, ବିଶେଷ ଭାବରେ ତାହାଙ୍କ ଲାଗି ମନ୍ଦିର ଉନ୍ମୁକ୍ତ ରହିବ, ସେ ଇଚ୍ଛାନୁଯାୟୀ ରାମେଶ୍ୱର—ମହାଦେବଙ୍କୁ ସ୍ପର୍ଶ କରି ପୂଜା ଅର୍ଚ୍ଚନା କରିବେ, ଯେପରି କୌଣସି ଅସୁବିଧା ବା ସେବାର ତ୍ରୁଟି ନହେବ ସେଥିପ୍ରତି ସର୍ବଦା ତତ୍ପର ରହିବ' ଇତ୍ୟାଦି । ଶିବଙ୍କ ମଥାରେ

ଚଢ଼ାଇବା ପାଇଁ ରାଜା ୧୦୮ ସୁନାର ବେଲପତ୍ର ଗଢ଼ି ମାଆଙ୍କୁ ଦେଇଥିଲେ । ସେଠାରେ ସଙ୍ଗୀଗଣଙ୍କ ସହିତ ଶ୍ରୀ ଶ୍ରୀ ମାଆ ଉପସ୍ଥିତ ଥିଲେ । ରାମେଶ୍ୱର ଦର୍ଶନ କରି ଫେରିବା ବେଳେ ରାଜା ନିଜ ରାଜ୍ୟକୁ ମାଆଙ୍କୁ ଆମନ୍ତ୍ରଣ କରି ଆଣିଲେ । ରାଜା କୋଷାଧ୍ୟକ୍ଷଙ୍କୁ ଆଦେଶ ଦେଇ କହିଲେ—"ଶ୍ରୀ ଶ୍ରୀ ମାଆଙ୍କପାଇଁ ଧନାଗାର ଖୋଲି ରଖିବ, ଯାହା କିଛି ସୁନା, ହୀରା, ମୁକ୍ତା, ଜହରତ୍ ସବୁ ଦେଖାଇବ, ତାହାଙ୍କର ଯାହା ଖୁସି ସେଥିରୁ ସେ ଗ୍ରହଣ କରିବେ ।"

ରାଜାଙ୍କ ଆଦେଶାନୁଯାୟୀ ଉକ୍ତ କର୍ମଚାରୀ ଶ୍ରୀ ଶ୍ରୀ ମାଆଙ୍କୁ ସେହି ଧନାଗାରର ଧନରତ୍ନ ଦେଖାଇ ତାହା ନେବାକୁ ଅନୁରୋଧ କଲେ । ପୁନଃ ପୁନଃ ଅନୁରୋଧ କରିବାରୁ ମାଆ କହିଲେ, 'ମୋର ତ କିଛି ଅଭାବ ନାହିଁ, ଯାହା କିଛି ପ୍ରୟୋଜନ ମୋର ଶଶୀ (ସ୍ୱାମୀ ରାମକୃଷ୍ଣାନନ୍ଦ) ସବୁ ବ୍ୟବସ୍ଥା କରିଛନ୍ତି ।' ସେଥିରେ କୋଷାଧ୍ୟକ୍ଷ ଅସନ୍ତୁଷ୍ଟ ହେଲେ । ତାଙ୍କର ଏପରି ଖେଦ ଓ ଦୁଃଖ ଦେଖି ଶେଷରେ ଶ୍ରୀ ଶ୍ରୀ ମାଆ କହିଲେ,"ଅଚ୍ଛା,ମୋର କିଛି ପ୍ରୟୋଜନ ନାହିଁ, ରାଧୁକୁ (ମାଆଙ୍କ ଭ୍ରାତୃଷ୍ପୁତ୍ରୀ—ବାଳିକା) ପଚାର, ତାହାର ଯଦି ପ୍ରୟୋଜନ ଥାଏ ସେ ଏଥିରୁ ନେଉ ।" ମାଆ ରାଧୁକୁ ପଚାରିଲେ 'ତୁ ଏଥିରୁ କିଛି ନେବୁ ?' ପଚାରିବା ବେଳେ ମାଆଙ୍କ ଛାତି ଦପ୍ ଦପ୍ ହେବାକୁ ଲାଗିଲା, କେଜାଣି ପିଲା ମଣିଷ ହୀରା ମୁକ୍ତା ଗୁଡ଼ିକ ଏତେ ଚକ୍ ଚକ୍ କରୁଛି, କେଜାଣି ହୁଏତ ମାଗି ବସିବ । ସେଥିଲାଗି ଠାକୁରଙ୍କୁ ବ୍ୟାକୁଳ ଭାବରେ ପ୍ରାର୍ଥନା କଲେ, 'ଠାକୁରେ ! ଆପଣ କୃପାକରି ତାହାର ମତି ବଦଳାଇ ଦିଅନ୍ତୁ, ସେ କିଛି ନ ମାଗୁ' । ସତକୁ ସତ ଠାକୁରେ ତାଙ୍କର ପ୍ରାର୍ଥନା ଶୁଣିଲେ । ସେ ସବୁ ହାତରେ ଓଲଟ ପାଲଟ କରି ଦେଖି ରାଧୁ (ଛୋଟ ବାଳିକା) କହିଲା, 'କାଁ

ମୁଁ ଏଗୁଡ଼ାକ ନେଇ କଅଣ କରିବି ? ମୋର ଏଥିରେ ପ୍ରୟୋଜନ ନାହିଁ । ମୋର ଗୋଟିଏ ପେନ୍‌ସିଲ ହଜି ଯାଇଛି, ଗୋଟିଏ ପେନ୍‌ସିଲ ଦରକାର, ମୋତେ ଗୋଟିଏ ପେନ୍‌ସିଲ କିଣିଦିଅ' । ସେତେବେଳେ ମାଆ ଅସୁସ୍ଥା ହେଲେ—ଭାବନା ଗୁଲିଗଲା । ବଜାରରୁ ତାଙ୍କୁ ଗୋଟିଏ ପେନ୍‌ସିଲ ଦୁଇ ପଇସା ଦେଇ କିଣି ଦେଲେ ।

ଶ୍ରୀ ଶ୍ରୀ ମାଆ ରାମେଶ୍ୱର ତୀର୍ଥ ଦର୍ଶନ କରି ବାଙ୍ଗାଲୋର ଆସିଲେ । ସେଠାରେ ମଧ୍ୟ ଶ୍ରୀ ଶ୍ରୀ ରାମକୃଷ୍ଣ ମଠ ସ୍ଥାପିତ । ଅନେକ ଲୋକ ଥିବାରୁ ବାସସ୍ଥାନ ନିମନ୍ତେ ମଠ ହତାରେ ତମ୍ବୁ ପଡ଼ିଥିଲା । ତାହାଙ୍କୁ ଦର୍ଶନ କରିବା ଲାଗି ଭାରି ଲୋକଭିଡ଼ ହୋଇଥିଲା । ଲୋକମାନେ ଫୁଲମାଳ ସହିତ ଅନ୍ୟାନ୍ୟ ଉପହାର ଶ୍ରୀ ଶ୍ରୀ ମାଆଙ୍କୁ ଭେଟିଦେଇଥିଲେ । ପରବର୍ତ୍ତୀ କାଳରେ ଭକ୍ତମାନଙ୍କ ନିକଟରେ ଶ୍ରୀଶ୍ରୀ ମାଆ କହିଥିଲେ, 'ବାଙ୍ଗାଲୋର ଦର୍ଶନ କରିବା ଲାଗି କେତେ ଲୋକ ଗହଳି ! ସେମାନେ ଏତେ ଫୁଲ ଅଣିଥିଲେ ଯେ ସ୍ତୂପାକାର ହୋଇ ଯାଇଥିଲା' । ମାଆ ସେଠାରୁ ପୁନର୍ବାର ମାନ୍ଦ୍ରାଜ ମଠକୁ ଆସି ଦିନେ ଦୁଇ ଦିନ ରହି କଲିକତା ଅଭିମୁଖେ ଯାତ୍ରା କଲେ । କଲିକତା ଆସିବା ରାସ୍ତାରେ ରାଜମାହେନ୍ଦ୍ରୀରେ ଅବତରଣ କରି ଗୋଦାବରୀରେ ସ୍ନାନ କରିଥିଲେ । ରାଜମାହେନ୍ଦ୍ରୀ ତ୍ୟାଗ କରି ଶ୍ରୀ ଶ୍ରୀ ମାଆ ପୁରୀରେ ତିନି ଗୁରିଦିନ ରହି କଲିକତା ପ୍ରତ୍ୟାବର୍ତ୍ତନ କଲେ ୧୧ ତାରିଖ-ଏପ୍ରେଲ ଖ୍ରୀଃ ୧୯୧୧ରେ ।

ଖ୍ରୀ: ୧୯୧୨ ନଭେମ୍ବର ମାସରେ ଶ୍ରୀ ଶ୍ରୀ ମାଆ ପୁନର୍ବାର କାଶୀ ଯାଇଥିଲେ । ଏହା ତାହାଙ୍କର ତୃତୀୟ ଥର କାଶୀ ଗମନ । ତାହାଙ୍କ ସଙ୍ଗରେ କେତେକ ସ୍ତ୍ରୀ ପୁରୁଷ ଭକ୍ତ । ଏଥର କାଶୀରେ ତାହାଙ୍କ

ପାଇଁ ନବ ନିର୍ମିତ ଲକ୍ଷ୍ମୀ ନିବାସ କୋଠୀରେ ବାସ ସ୍ଥାନରେ ବ୍ୟବସ୍ଥା ହୋଇଥିଲା ତାହା ଶ୍ରୀ ରାମକୃଷ୍ଣ ଅଦ୍ୱୈତ ଆଶ୍ରମ ନିକଟରେ ଅବସ୍ଥିତ । ଏଥର କାଶୀରେ ମାଆ ପ୍ରାୟ ଅଢ଼େଇମାସ କାଳ ଥିଲେ । କାଶୀ ଯାତାର ସମୁଦାୟ ବ୍ୟୟଭାର ପରମ ଭକ୍ତ ଶ୍ରୀଯୁକ୍ତ ନୃପେନ୍ଦ୍ରନାଥ ମୁଖୋପାଧ୍ୟାୟ ବହନ କରିଥିଲେ । ସେ ନିତ୍ୟ ପ୍ରାତଃକାଳରେ ଗଙ୍ଗା ସ୍ନାନ କରି ହାତରେ ଠୁଙ୍ଗାଏ ମିଠାଇ କିଣି ଶ୍ରୀ ଶ୍ରୀ ମାଆଙ୍କୁ ଦେଇ ପ୍ରଣାମ କରି ଯାଉଥାନ୍ତି । ମାଆ ମଧ୍ୟ ତାହାଙ୍କୁ ସ୍ନେହ କରୁଣା ଦୃଷ୍ଟିରେ ଦେଖୁଥାଆନ୍ତି ।

ଏଥି ପୂର୍ବରୁ ଶ୍ରୀ ଶ୍ରୀ ମାଆ ଦୁଇଥର କାଶୀ ଆସିଥିଲେ ସୁଦ୍ଧା ଏତେ ଦୀର୍ଘକାଳ ବାସ କରି ନ ଥିଲେ । ଏଥର କିନ୍ତୁ ଅଧିକ ଦିନ ରହିବାର ସୁଯୋଗ ମିଳିବାରୁ ବୁଲି ବୁଲି କାଶୀର ବିଶେଷ ବିଶେଷ ଦେବ ମନ୍ଦିରମାନ ଦର୍ଶନ କଲେ । ତାହା ଛଡ଼ା ସ୍କନ୍ଦ ପୁରାଣାନ୍ତର୍ଗତ କାଶୀଖଣ୍ଡ ସେ ନିୟମିତ ଶ୍ରବଣ କରୁଥାନ୍ତି । ସେଥିରେ କାଶୀ ମାହାତ୍ମ୍ୟ ବିଶେଷ ଭାବରେ ବର୍ଣ୍ଣିତ । ପ୍ରାୟଶଃ ଦୁର୍ଗାବାଡ଼ି, କେଦାରନାଥ, ତିଲଭାଣ୍ଡେଶ୍ୱର, ବିଶ୍ୱନାଥ, ଅନ୍ନପୂର୍ଣ୍ଣା ପ୍ରଭୃତି ଦର୍ଶନ କରିବାକୁ ଯାଉଥାନ୍ତି ।

ଶ୍ରୀ ଶ୍ରୀ ମାଆ କାଶୀରେ ଦେବସ୍ଥାନ ବ୍ୟତୀତ ଦୁଇ ଜଣ ସାଧୁଙ୍କୁ ଦର୍ଶନ କରିଥିଲେ । ଗଙ୍ଗାତୀରରେ ବାସ କରୁଥିବା ଏକ ବିଖ୍ୟାତ ନାନକପନ୍ଥୀ ସାଧୁ, ଅପର ଶ୍ରୀମଦ୍ ତୋତାପୁରୀଙ୍କ ଅଖଡ଼ାନ୍ତର୍ଭୁକ୍ତ ନାଗା ସନ୍ନ୍ୟାସୀ ଚମେଲିପୁରୀ । ଶ୍ରୀଶ୍ରୀମାଆ ନାନକପନ୍ଥୀ ସାଧୁଙ୍କୁ ଟଙ୍କା ଭେଟି ଦେଇ ପ୍ରଣାମ କରି ତାହାଙ୍କ ପଦଧୂଳି ଗ୍ରହଣ କରିଥିଲେ । ଚମେଲିପୁରୀଙ୍କୁ ଦର୍ଶନ କରିବାବେଳେ ମାଆଙ୍କ ସଙ୍ଗରେ ଯାଇଥିବା ଜଣେ ଭକ୍ତା ପଚାରିଲେ, ମହାରାଜ । ଆପଣଙ୍କୁ କିଏ ଖାଇବାକୁ ଦିଏ ?

କିପରି ଆପଣ ଚଳନ୍ତି ?' ସ୍ୱାମୀଜୀ ତେଜପୂର୍ଣ୍ଣ ଭାବରେ ଉତ୍ତରଦେଲେ, 'ମାଆ ଅନ୍ନପୂର୍ଣ୍ଣା ଅଛନ୍ତି, ଅନ୍ନ କିଏ ଦେବ ।' ତାହାଙ୍କ କଥା ଶୁଣି ଶ୍ରୀ ଶ୍ରୀ ମାଆ ଅତ୍ୟନ୍ତ ପ୍ରୀତ ହେଲେ । ଫେରି ଆସି ଭକ୍ତମାନଙ୍କୁ କହିଲେ, 'ସାଧୁଟି ବୃଦ୍ଧ ହେଲେ ସୁଦ୍ଧା ତାହାଙ୍କର ବାଳକ ସ୍ୱଭାବ । ତାହାଙ୍କ ବଦନ ମଣ୍ଡଳ ପବିତ୍ରତାରେ ପରିପୂର୍ଣ୍ଣ, ସର୍ବଦା ଅନ୍ତର୍ମୁଖୀ, ଈଶ୍ୱର ଚିନ୍ତାରେ ମଗ୍ନ । ତାହାଙ୍କ ବାଳକସୁଲଭ ଭାବ ମୋତେ ଖୁବ ଭଲ ଲାଗିଲା ।' କହି ଆଉ ଦିନ ମାଆ ତାଙ୍କ ପାଇଁ ଫଳ, ମିଷ୍ଟାନ୍ନ ଓ କନ୍ଦମୂଳ ପଠାଇ ଦେଲେ । କେହି ଭକ୍ତ ମାଆଙ୍କୁ ପଚାରିଲେ,'ମାଆ ! କାଶୀରେ ଅନେକ ସାଧୁ ଅଛନ୍ତି ଦେଖିବାକୁ ଯିବେ ?'ସେଥିରେ ମାଆ କହିଲେ, 'ନା ମୁଁ ପୁରୀ ଗୋସାଇଁଜୀଙ୍କୁ ଦର୍ଶନ କରିଛି, ଆଉ କାହାରିକୁ ଦେଖିବାର ପ୍ରୟୋଜନ ନାହିଁ ।' ଆଉ ଦିନେ ମାଆ ଶ୍ରୀ ରାମକୃଷ୍ଣ ସେବାଶ୍ରମକୁ ଯାଇ ରୋଗୀମାନଙ୍କ ସେବା ଶୁଶ୍ରୂଷା ହେଉଥିବା ପ୍ରତ୍ୟେକ ଘର ଦେଖି ଅତ୍ୟନ୍ତ ସନ୍ତୁଷ୍ଟ ହୋଇଥିଲେ । ସେହି ସେବାଶ୍ରମର ପ୍ରତିଷ୍ଠାତା ଓ କର୍ମୀମାନଙ୍କୁ ଭୂୟସୀ ପ୍ରଶଂସା କରି ଫେରିବାବେଳେ ସେବା ଫଣ୍ଡରେ ଦଶଟଙ୍କା ଦାନ କଲେ ।

'କାଶୀର ସାରନାଥ ପ୍ରାଚୀନ ବୌଦ୍ଧମାନଙ୍କ କୀର୍ତ୍ତି ଓ ଧର୍ମ ପ୍ରଚାରର ପୀଠସ୍ଥଳୀ ରୂପେ ଖ୍ୟାତ । ତାହା ଦେଖିବାକୁ ମାଆ ଦିନେ ଆଗ୍ରହ ପ୍ରକାଶ କଲେ । ସ୍ୱାମୀ ବ୍ରହ୍ମାନନ୍ଦ ଓ ଅନ୍ୟାନ୍ୟ ଭକ୍ତଗଣ ମଧ୍ୟ ଯିବାକୁ ବାହାରିଲେ । ମାଆଙ୍କପାଇଁ ଖଣ୍ଡିଏ ଘୋଡ଼ାଗାଡ଼ି ଏବଂ ଅନ୍ୟମାନଙ୍କ ପାଇଁ ଖଣ୍ଡିଏ ଘୋଡ଼ାଗାଡ଼ିର ବ୍ୟବସ୍ଥା ହେଲା । ସେଠାରେ ଅନେକ କାରୁକାର୍ଯ୍ୟମଣ୍ଡିତ ଭଗ୍ନ ମନ୍ଦିର, ଯାଦୁଘର, ପ୍ରଭୃତି ଯାହାକିଛି ଦ୍ରଷ୍ଟବ୍ୟ ଜିନିଷ ଥିଲା, ସମସ୍ତେ ସେ ସବୁ ଦର୍ଶନ କରି ଫେରିବାବେଳେ ସ୍ୱାମୀ ବ୍ରହ୍ମାନନ୍ଦ ଯେଉଁ ଗାଡ଼ିରେ ଯାଉଥିଲେ

ସେଡ଼ୁ ଗାଡ଼ିରେ ମାଅଙ୍କୁ ପଠାଇ ସେ ପଛରେ ମାଅଙ୍କ ଗାଡ଼ିରେ ଆସିଲେ । ଅସ୍ଥ ଅସ୍ଥ ବାହ୍ମାରେ ଘୋଡ଼ାଟି ହଠାତ୍ ଅମାନିଆ ହୋଇ ପଡ଼ିଲା । ସେ ଅଦୌ ବୋଲ ମାନିଲା ନାହିଁ । ଘୋଡ଼ାଟି ଏପରି ଡେଇଁଲା ଯେ ଗାଡ଼ିଟା ଧ୍ୱସ୍ତ ବିସ୍ତୁ ପରେ ଯାଇ ଧକ୍କା ଖାଇଲା । ସେଥିରେ ଆରୋହୀମାନେ ବିଶେଷ ଆଘାତ ପାଇଲେ । ସ୍ୱାମୀଜୀଙ୍କର ଦେହ ସ୍ଥାନେ ସ୍ଥାନେ ଛିଣ୍ଡିଯାଇ ରକ୍ତ ବୋହିଲା । ମାଅ ଶୁଣି କହିଲେ, 'ଏ ବିପଦ ମୋ ଅଦୃଷ୍ଟରେ ଥିଲା, ରାଖାଲ (ସ୍ୱାମୀ ବ୍ରହ୍ମାନନ୍ଦ) ମୋର କରି ନିଜ ଉପରକୁ ଟାଣିନେଲା ।' କାଶୀରେ ନାନା ପ୍ରସିଦ୍ଧ ଦେବବିଗ୍ରହ, ସାଧୁ, ବିଶେଷ ବିଶେଷ ସ୍ଥାନ ଦର୍ଶନ କରି ଅଢ଼େଇମାସ କାଳ ରହି ମାଅ କଲିକତାକୁ ଫେରିଲେ ତା୧୬ ଜାନୁୟାରୀ ୧୯୧୩ ଖ୍ରୀଃ ରେ ।

## ତ୍ୟାଗୀ ସନ୍ନ୍ୟାସୀଙ୍କ ଅର୍ଚ୍ଚନା

ଶ୍ରୀ ରାମକୃଷ୍ଣ ଦେବଙ୍କ ତ୍ୟାଗୀ ସନ୍ତାନଗଣ ଏଣେ ତେଣେ ବୁଲି ଭିକ୍ଷାନ୍ନଦ୍ୱାରା ଜୀବନ ଯାପନ ଓ ତପସ୍ୟା କରୁଥାନ୍ତି । ସେଥି-ଲାଗି ଶ୍ରୀ ଶ୍ରୀ ମାଅ ବଡ଼ ଚିନ୍ତିତା ଥିଲେ । ବୁଦ୍ଧଗୟା ମଠ ଦେଖି ସେ କହିଥିଲେ, 'ଠାକୁରେ ! ଏଠାରେ ସାଧୁମାନଙ୍କ ଖାଇବା ପିଇବା ରହିବାର କୌଣସି ଅସୁବିଧା ନାହିଁ । ତୁମ୍ଭର ସନ୍ତାନଙ୍କ ନିମନ୍ତେ ଗୋଟିଏ ସ୍ଥାୟୀ ବାସସ୍ଥାନ ହୋଇପାରିଲା ନାହିଁ । ସେମାନେ କେତେ କଷ୍ଟ ସହୁଛନ୍ତି, ଦ୍ୱାରେ ଦ୍ୱାରେ ଯାଇ ଭିକ୍ଷା କରୁଛନ୍ତି । ଠାକୁରେ, ସେମାନଙ୍କ ପାଇଁ ଗୋଟିଏ ସୁବନ୍ଦୋବସ୍ତ କରିଦିଅ, ଭିକ୍ଷାଲାଗି ଯେପରି ସେମାନେ କଷ୍ଟ ନ ପାଆନ୍ତି ।' ଶ୍ରୀ ଶ୍ରୀ ମାଅଙ୍କ ଆଶୀର୍ବାଦ ଓ ପ୍ରାର୍ଥନା ଫଳରେ ବେଲୁଡ଼ ମଠ ସ୍ଥାପିତ ହେଲା ।

ସ୍ୱାମୀ ବିବେକାନନ୍ଦ ଆମେରିକାରୁ ଫେରି ଆସି ୧୮୯୮ ଖ୍ରୀଷ୍ଟାବ୍ଦରେ ଗଙ୍ଗାତୀରରେ ବେଲୁଡ଼ ମଠ ସ୍ଥାପନ କଲେ । ନବନିର୍ମିତ ମଠରେ ଶ୍ରୀ ଦୁର୍ଗା ପୂଜା ମହୋତ୍ସବ କରିବାଲାଗି ସ୍ୱାମୀଜୀ ବ୍ୟାକୁଳ ହୋଇ ଉଠିଲେ । ଶାସ୍ତ୍ରୀୟ ରୀତିରେ ସମସ୍ତ ବ୍ୟବସ୍ଥା ହେଲା । ଜଣେ ସୁଯୋଗ୍ୟ ଶାସ୍ତ୍ରଜ୍ଞ ପଣ୍ଡିତ ବ୍ରାହ୍ମଣ ତନ୍ତ୍ରଧାରକ ଏବଂ ଜଣେ ବ୍ରହ୍ମଚାରୀ ପୂଜକ ନିର୍ବାଚିତ ହେଲେ । ସୁଦକ୍ଷ କାରିଗର ଦ୍ୱାରା ନିର୍ମିତ ଦୁର୍ଗାପ୍ରତିମା ଅଣାଗଲା । ତିନିଦିନ ଧରି ମହା ସମାରୋହ ସହକାରେ ପୂଜା ସମ୍ପନ୍ନ ହେଲା । ବହୁ ଅତିଥି ଅଭ୍ୟାଗତ ଓ ଭକ୍ତ ଦେବୀଙ୍କ ପ୍ରସାଦ ଭୋଜନ କଲେ । ସେହି ପୂଜା ସମୟରେ ସ୍ୱାମୀଜୀ ଶ୍ରୀ ଶ୍ରୀ ମାଆଙ୍କୁ ଆମନ୍ତ୍ରଣ କରି ମଠକୁ ନେଇଆସି ତାହାଙ୍କ ନାମରେ ଦୁର୍ଗାପୂଜା ସଂକଳ୍ପ କରାଇଥିଲେ । ପୂଜା ଶେଷରେ ଯାହାକୁ ଯାହା ଦକ୍ଷିଣା ପ୍ରଭୃତି ଦେବାର କଥା ତାହାଙ୍କଦ୍ୱାରା ଦିଆଇଥିଲେ । ସେହି ଦିନରୁ ବେଲୁଡ଼ ମଠରେ ପ୍ରତିବର୍ଷ ନିୟମିତ ଭାବରେ ଦୁର୍ଗାପୂଜା ହୋଇ ଆସୁଛି ।

ତ୍ୟାଗୀ ସନ୍ତାନମାନେ ଶ୍ରୀ ଶ୍ରୀ ମାଆଙ୍କୁ ସାକ୍ଷାତ୍ ଜଗଜ୍ଜନନୀ ରୂପେ କିପରି ଶ୍ରଦ୍ଧା-ଭକ୍ତି କରୁଥାନ୍ତି ତାହା ନିମ୍ନୋକ୍ତ ବିବରଣୀରୁ ସ୍ପଷ୍ଟ ପରିଚୟ ମିଳେ ।

ଖ୍ରୀଃ ୧୯୧୨ ସାଲରେ ସ୍ୱାମୀ ପ୍ରେମାନନ୍ଦଜୀ ମହାରାଜ ବେଲୁଡ଼ ମଠରେ ଦୁର୍ଗୋତ୍ସବ କଲେ । ସେତେବେଳେ ମଠର ଯାବତୀୟ କାର୍ଯ୍ୟର ଭାର ତାହାଙ୍କ ଉପରେ ନ୍ୟସ୍ତ ଥିଲା । ସେ ସମସ୍ତ ଦେଖା ଶୁଣା କରୁଥାନ୍ତି । ଦେବୀଙ୍କ ବୋଧନ ଦିନରେ ( ଷଷ୍ଠୀ ତିଥିରେ ) ଶ୍ରୀ ଶ୍ରୀ ମାଆ ବେଲୁଡ଼ ମଠକୁ ଆସିଲେ । ଷଷ୍ଠୀଠାରୁ ଦଶମୀ ପର୍ଯ୍ୟନ୍ତ ସେ ରହିଲେ । ମଠର ଉତ୍ତର ଦିଗର ବଗିଚାରେ ତାଙ୍କର ବାସସ୍ଥାନ

ହୋଇଥିଲା । ବୋଧନ ଦିନରେ ମାଆଙ୍କ ଗାଡ଼ି ଆସିବାରେ ବିଳମ୍ବ ହେବାର ଦେଖି ପ୍ରେମାନନ୍ଦ ମହାରାଜ ଅଧୀର ହୋଇ ଉଠିଲେ । ମଠର ପ୍ରବେଶ ଦ୍ୱାରରେ କଦଳୀ ବୃକ୍ଷ ରୋପିତ ଓ ମଙ୍ଗଳ ଘଟ ସ୍ଥାପିତ ହୋଇ ନ ଥିବାର ଦେଖି କହିଲେ, 'ଏପର୍ଯ୍ୟନ୍ତ କଦଳୀ ଗଛ, ମଙ୍ଗଳ ଘଟ ସ୍ଥାପନା ହୋଇନାହିଁ, ଅଉ ମାଆ ଆସିବେ କପରି ?' କିଛି ସମୟ ପରେ ମାଆଙ୍କ ଗାଡ଼ି ଆସି ପହଞ୍ଚିଲା । ସାଧୁ ବ୍ରହ୍ମଚାରୀମାନେ 'ଜୟ ମହାମାୟୀକି ଜୟ' ଧ୍ୱନି କରି ତାହାଙ୍କୁ ପାଛୋଟି ନେଲେ । ସେଥର ମହାଷ୍ଟମୀ ଦିନରେ ପ୍ରାୟ ତିନିଶତ ଭକ୍ତ ମାଆଙ୍କ ପାଦପଦ୍ମରେ ପୁଷ୍ପାଞ୍ଜଳି ପ୍ରଦାନ କରି କୃତାର୍ଥ ହେଲେ ।

ଅଉଥରେ ଦୁର୍ଗା ପୂଜା ସମୟରେ ମାଆ ବେଲୁଡ଼ ମଠକୁ ଆସିଥାନ୍ତି । ଷଷ୍ଠୀଦିନରେ ମଠର ଫାଟକ ନିକଟରେ ଗାଡ଼ି ପହଞ୍ଚିବା ମାତ୍ରେ ଘୋଡ଼ା ଖୋଲିଦେଇ ସ୍ୱାମୀ ପ୍ରେମାନନ୍ଦ ଓ ଅନ୍ୟାନ୍ୟ ଭକ୍ତଗଣ ଗାଡ଼ି ଟାଣି ମଠର ଭିତରକୁ ଘେନିଗଲେ । ଶ୍ରୀ ଶ୍ରୀ ମାଆଙ୍କୁ ଦର୍ଶନ କରି ସ୍ୱାମୀ ପ୍ରେମାନନ୍ଦ ଆନନ୍ଦରେ ପୁଲକିତ ହେଲେ । ତାଙ୍କର ଦେହ ରୋମାଞ୍ଚିତ ହେଲା । ସେ ଭାବରେ ଗଦ୍‌ଗଦ୍ ହୋଇଗଲେ । ସତେକି ସେ ସାକ୍ଷାତ୍ ଜଗଦମ୍ବାଙ୍କୁ ଦର୍ଶନ କରୁଛନ୍ତି ଅନୁଭବ କଲେ ।

୧୩୨୩ ସାଲରେ ଶ୍ରୀ ଶ୍ରୀ ମାଆ ଦୁର୍ଗାପୂଜା ସମୟରେ ବେଲୁଡ଼ ମଠକୁ ଆସି ତନ୍ନ ତନ୍ନ କରି ଦେଖୁଥାନ୍ତି—କେଉଁଠାରେ ପୂଜା ମଣ୍ଡପ, କେଉଁଠାରେ ଠାକୁର ଘର, କେଉଁଠାରେ ଭୋଗ ଭଣ୍ଡାର, କେଉଁଠାରେ ବା ପନିପରିବା କଟା ହେଉଛି—ଇତ୍ୟାଦି । ସପ୍ତମୀ ଦିନରେ ସ୍ୱାମୀ ଧୀରାନନ୍ଦ ଆସି ସ୍ୱାମୀ ପ୍ରେମାନନ୍ଦଙ୍କୁ କହିଲେ,— 'ମାଆ କହୁଛନ୍ତି, ଦଶମୀ ପର୍ଯ୍ୟନ୍ତ ରହି ପାରିବେ ନାହିଁ, କଲିକତାରେ

(ଉଦ୍‌ବୋଧନ କାର୍ଯ୍ୟାଳ[illegible] ମାଅଙ୍କ [illegible] ବିଶେଷ ପ୍ରୟୋଜନ



ଅଛି । ଅତଏବ ଆପଣ ଯାଇ ମାଅଙ୍କୁ ରହିବାକୁ ଅନୁରୋଧ କରନ୍ତୁ । ତାହା ଶୁଣି ସ୍ୱାମୀ ପ୍ରେମାନନ୍ଦ ହାତ ଯୋଡ଼ି ଜଣାଇଲେ 'ମହାମାୟାଙ୍କୁ କିଏ ରହିବାକୁ ଯିବ ? ତାହାଙ୍କ ଇଚ୍ଛା ବିରୁଦ୍ଧରେ କିଏ କଅଣ କରିବ ? ତାଙ୍କର ଯାହା ଇଚ୍ଛା ସେ ତାହା କରିବେ ।' ଯାହା ହେଉ ସେଥର ମାଅଙ୍କ ଯିବା ହେଲନାହିଁ । ବିଜୟା ପର୍ଯ୍ୟନ୍ତ ସେ ରହିଥିଲେ ।

ଶ୍ରୀ ରାମକୃଷ୍ଣ ଦେବଙ୍କ ଜନ୍ମତିଥି ପରେ ସାଧାରଣ ମହୋତ୍ସବ ଦିନ ସକାଳେ କେତେକ ସ୍ତ୍ରୀ ଭକ୍ତଙ୍କ ସହିତ ଶ୍ରୀ ଶ୍ରୀ ମାଅ ବେଲୁଡ଼ ମଠକୁ ଆସିଥାନ୍ତି । ସ୍ୱାମୀ ବ୍ରହ୍ମାନନ୍ଦ ( ରାମକୃଷ୍ଣ ମିଶନର ଅଧ୍ୟକ୍ଷ ) ମଠର ଫାଟକ ପାଖରେ ଛିଡ଼ା ହୋଇ 'ଜୟ ମହାମାୟୀକି ଜୟ' ଧ୍ୱନି କରି ଅଭ୍ୟର୍ଥନା ଜଣାଇ ମାଅଙ୍କୁ ମଠଭିତରକୁ ନେଇଗଲେ । ଶ୍ରେଣୀବଦ୍ଧ ଭାବରେ ଭକ୍ତଗଣ ମଧ୍ୟ ଶଙ୍ଖ ବଜାଇ ତାହାଙ୍କ ଅନୁଗମନ କଲେ । ଠାକୁର ଘରକୁ ଯାଇ ଦର୍ଶନ କରି ଫେରିବା ବେଳେ ତଳେ ମଠ ମଝିରେ ଶ୍ରୀ ଶ୍ରୀ ମାଅଙ୍କୁ ସମସ୍ତେ ପୂଜାକଲେ । ମଠର ପ୍ରାଙ୍ଗଣରେ ମାଅ ଚଉକିରେ ବସି ନିଶ୍ଚଳ ଭାବରେ ଦଣ୍ଡାୟମାନା—ସର୍ବାଙ୍ଗ ବସ୍ତ୍ରାବୃତା । ତାହାଙ୍କୁ ଦର୍ଶନ କରି ସ୍ୱାମୀ ବ୍ରହ୍ମାନନ୍ଦ ମହାରାଜ ଭାବରେ ଗଦଗଦ; ଦେହ ତାଙ୍କର ରୋମାଞ୍ଚିତ; ଲୋଚନ ଅଶ୍ରୁ ପୂର୍ଣ୍ଣ । ମହାରାଜ ସେହି ଭାବାବସ୍ଥାରେ ମାଅଙ୍କ ପାଦ-ପଦ୍ମରେ ପୁଷ୍ପାଞ୍ଜଳି ପ୍ରଦାନ ଏବଂ ଆରତି କଲେ । ଆରତି ପରେ ମହାରାଜଙ୍କ ନିର୍ଦ୍ଦେଶାନୁଯାୟୀ ସାଧୁ, ବ୍ରହ୍ମଚାରୀ—ଭକ୍ତଗଣ ନତ ଜାନୁ ହୋଇ ଦୁଇ ଶ୍ରେଣୀରେ 'ସର୍ବ ମଙ୍ଗଳ ମଙ୍ଗଲ୍ୟେ' ଇତ୍ୟାଦି ସ୍ତବ ପାଠ ଓ ପୁଷ୍ପାଞ୍ଜଳି ପ୍ରଦାନ କଲେ । ତାହାଙ୍କ ସମ୍ମୁଖରେ

ମହାରାଜ ମଧ୍ୟ ନତଜାନୁ, ପୂର୍ବାସ୍ୟ, ବଦ୍ଧାଞ୍ଜଳିପୁଟ, ପ୍ରେମାଶ୍ରୁପୂର୍ଣ୍ଣ-ଲୋଚନ ହୋଇ ବସିଥିଲେ ।

ଏଥିରୁ ସ୍ପଷ୍ଟ ସୂଚିତ ହୁଏ ଯେ ଶ୍ରୀ ରାମକୃଷ୍ଣ ଦେବଙ୍କ ପାର୍ଷଦ ତ୍ୟାଗୀ ସନ୍ନ୍ୟାସୀ ଓ ଭକ୍ତଗଣ ଶ୍ରୀ ଶ୍ରୀ ମାଅଙ୍କୁ ସାକ୍ଷାତ୍ ଜଗଦମ୍ବା ଜ୍ଞାନ କରୁଥାନ୍ତି ଏବଂ ଶ୍ରୀ ଦୁର୍ଗା ଦେବୀଙ୍କ ଅର୍ଚ୍ଚନା ପ୍ରକାରାନ୍ତରରେ ତାହାଙ୍କ ଅର୍ଚ୍ଚନା ବୋଲି ମଣୁଥାନ୍ତି । ସେଥିଲାଗି ପୂଜା ସମୟରେ ସେ ଉପସ୍ଥିତ ନ ଥିଲେ, ତାହାଙ୍କ ପାଦପଦ୍ମରେ ପୁଷ୍ପାଞ୍ଜଳି ନ ଦେଲେ ସେମାନେ ତୃପ୍ତି ଲାଭ କରୁ ନଥିଲେ ଏବଂ ପୂଜା ସଫଳ କି ବିଫଳ ହେଲା ତାହା ତାହାଙ୍କ ଉପସ୍ଥିତି, ଭକ୍ତି, ପ୍ରସନ୍ନତାରୁ ବୁଝି ପାରୁଥିଲେ ।

ଚଣ୍ଡୀରେ ବର୍ଣ୍ଣିତ ଅଛି—ଯେତେବେଳେ ଦେବୀଙ୍କ ଦ୍ୱାରା ମହିଷାସୁର ନିହତ ହେଲା, ସେତେବେଳେ ଇନ୍ଦ୍ରାଦି ଦେବଗଣ ଜଗତର ଆଧାରଭୂତା ଜଗଜ୍ଜନନୀଙ୍କୁ ସ୍ତୁତି କରି କହିଲେ,— 'ଅମ୍ବିକେ ! ଆପଣଙ୍କ ମହିମା ଅପାର, ଆପଣଙ୍କ ପ୍ରଭାବ ଅପାର, ବ୍ରହ୍ମା, ବିଷ୍ଣୁ, ଶିବ ଆପଣଙ୍କ ମହିମା ବର୍ଣ୍ଣନା କରିବାକୁ ଅକ୍ଷମ । ଦେବି ! ଆପଣ ସଜ୍ଜନଗଣଙ୍କ ହୃଦୟରେ ଶ୍ରଦ୍ଧା ସ୍ୱରୂପା, ଆପଣ ଲଜ୍ଜାରୂପିଣୀ, ଆପଣ ଚରାଚରବ୍ୟାପ୍ତା ଶକ୍ତିସ୍ୱରୂପିଣୀ । ସବୁଠାରୁ ଆଶ୍ଚର୍ଯ୍ୟର ବିଷୟ ଏହି ଯେ—ଯେଉଁମାନଙ୍କର କୌଣସି କାମନା ନାହିଁ, ଇହଲୋକ କିମ୍ବା ପରଲୋକରେ ମଧ୍ୟ ଭୋଗ କରିବାର ଲାଳସା ନାହିଁ; ଯେଉଁମାନେ ଜିତେନ୍ଦ୍ରିୟ, ସଂଯମୀ, ତପସ୍ୱୀ, ମୁମୁକ୍ଷୁ, ତତ୍ତ୍ୱଦର୍ଶୀ, ସେମାନେ ସୁଦ୍ଧା ଆପଣଙ୍କର ଅନୁଶୀଳନ, ସ୍ମରଣ, ଅର୍ଚ୍ଚନ ଓ ପୂଜନ କରୁଥାନ୍ତି, ଯେହେତୁ ଆପଣ ମୁକ୍ତିର ହେତୁ, ପରାବିଦ୍ୟା ସ୍ୱରୂପିଣୀ । ଆପଣଙ୍କ କୃପା ଦ୍ୱାରାହିଁ ଜାଗତିକ ବନ୍ଧନ ଛିନ୍ନ

ହୁଏ, ଭବ-ସାଗର ପାର ହେବାରେ କୌଣସି ପ୍ରତିବନ୍ଧକ ରହେନାହିଁ* ।

ଶ୍ରୀ ଶ୍ରୀ ମାଅଙ୍କୁ ଗୁରୁପତ୍ନୀ ବୋଲି ଯେ ସେମାନେ ଶ୍ରଦ୍ଧା କରୁଥାନ୍ତି, ତା ନୁହେଁ,ପରନ୍ତୁ ଅର୍ଯ୍ୟଗୌରବମଣ୍ଡିତ ସନାତନ ଧର୍ମର ମୂର୍ତ୍ତି ସ୍ୱରୂପା ମହାଶକ୍ତିର କେନ୍ଦ୍ରରୂପା ବୋଲି ସେମାନେ ଜ୍ଞାନ କରୁଥାନ୍ତି । ସ୍ୱାମୀ ବିବେକାନନ୍ଦ ତାହାଙ୍କ ଗୁରୁଭ୍ରାଇଙ୍କୁ ଆମେରିକାରୁ ମାଅଙ୍କ ସମ୍ବନ୍ଧରେ ଚିଠି ଲେଖିଥିଲେ—'ଭାଇ, ବିଶ୍ୱାସ ବଡ଼ ଧନ, ଭାଇ, ଜୀବନ୍ତ ଦୁର୍ଗାପୂଜା ଦେଖାଇବି ତେବେ ମୋର ନାମ । ତୁମ୍ଭେ ଜମି କିଣି ଜୀବନ୍ତ ଦୁର୍ଗା ( ଶ୍ରୀ ଶ୍ରୀ ମାଅ )ଙ୍କୁ ଯେଉଁଦିନ ବସାଇବ ସେହି-ଦିନ ମୁଁ ଏକାବେଳକେ ଦମ ଛାଡ଼ିବି । ତାହା ପୂର୍ବରୁ ମୁଁ ସ୍ୱଦେଶକୁ ଯାଉ ନାହିଁ । ଭାଇ, ମାଅଙ୍କ କଥା ମନେ ପଡ଼ିଲେ ସମସ୍ତ ସମୟରେ କହେଁ, କୋ ରାମଃ ! ଭାଇ ତାହା ଯେ କହୁଛି ମୋର ସେଠାରେହିଁ ଜିଦ୍‌ଖୋରତା । ରାମକୃଷ୍ଣ ପରମହଂସ ଈଶ୍ୱର ଥିଲେ କି ମଣିଷ ଥିଲେ ଯାହା କହୁବାର କୁହ, କିନ୍ତୁ ମାଅଙ୍କ ଉପରେ ଯାହାର ଭକ୍ତି ନାହିଁ ତାକୁ ଧିକ୍‌କାର କର ।'

ଏହି ଗ୍ରାମ୍ୟରମଣୀଙ୍କ ଚରିତ୍ର ଅତୁଳନୀୟ ଥିଲା । ଏତେ ସାଧୁ ଭକ୍ତଗଣ ତାହାଙ୍କୁ ସମ୍ମାନ କଲେ ସୁଦ୍ଧା ସେଥିରେ ସେ ଅହଙ୍କୃତା ହେଉ ନଥିଲେ । ପରନ୍ତୁ ପୂର୍ବପରି ସେହି ଲଜ୍ଜାପଟାବୃତା କୁଳବଧୂ ପରି ଥିଲେ । ପିତାମାତାଙ୍କ ସେବାରେ କି ପତି ସେବାରେ କି ଭକ୍ତ

---

*ଯାମୁକ୍ତ ହେତୁରବିଚନ୍ତ୍ୟ ମହାବ୍ରତା ଚ,
ଅଭ୍ୟସ୍ୟତେ ସୁନିୟତେନ୍ଦ୍ରିୟ ତତ୍ତ୍ୱସାରୈଃ ।
ମୋକ୍ଷାର୍ଥିଭି ମୁନିଭିରସ୍ତ ସମସ୍ତ ଦୋଷୈ,
ର୍ବିଦ୍ୟାସି ସା ଭଗବତୀ ପରମାହି ଦେବି । ୪ ।୧।

ସେବାରେ ସେ ଆଦର୍ଶ ସ୍ଥାନୀୟା ଥିଲେ । ତାଙ୍କର କୌଣସି ଆକାଂକ୍ଷା ନ ଥିଲା, କୌଣସି ଅଡମ୍ବର ନ ଥିଲା, କୌଣସି ଲୋକଦେଖାଣିଆ ଭାବ ନ ଥିଲା । ସବୁବେଳେ ତାହାଙ୍କର ଦୀନଭାବ । ସେ ସେବା-ପରାୟଣା, ସ୍ନେହଶୀଳା ଓ ଲଜ୍ଜାରୂପିଣୀ । ଆଦର୍ଶ ହିନ୍ଦୁରମଣୀଙ୍କ ଆଚାର-ବିଚାର ରୀତି-ନୀତିରେ ସେ ପୂର୍ଣ୍ଣ ବିଶ୍ୱାସିନୀ ଥିଲେ । ସେ ନିଜ ଜୀବନରେ ତାହା ଆଚରଣ କରି ଦେଖାଇଯାଇଛନ୍ତି । ସୀତା ସାବିତ୍ରୀଙ୍କ ଚରିତ୍ର ପୁରାଣରୁ ମିଳେ । କିନ୍ତୁ ଯେଉଁମାନେ ଏହାଙ୍କୁ ସାକ୍ଷାତ୍ କରିଛନ୍ତି, ପଦେ ଅଧେ ତାହାଙ୍କଠାରୁ ଉପଦେଶ ଶୁଣିଛନ୍ତି ଏହି ମହୀୟସୀ ଦେବୀଙ୍କ ମହିମା ସେମାନେ ମର୍ମେ ମର୍ମେ ବୁଝି ପାରିଛନ୍ତି । ତାହାଙ୍କୁ ସାକ୍ଷାତ୍ କରି ସେମାନଙ୍କ ଧାରଣା ବଦ୍ଧମୂଳ ହୋଇଅଛି ଯେ ପ୍ରାଚୀନ ସତୀ, ସୀତା, ସାବିତ୍ରୀ, ମୈତ୍ରେୟୀ କଳ୍ପିତ ନୁହନ୍ତି କିମ୍ବା ପୁରାଣରେ ସେମାନଙ୍କର ଚରିତ୍ର ଅତିରଞ୍ଜିତ ଭାବରେ ଚିତ୍ରିତ ହୋଇନାହିଁ । ଏହି ଶ୍ରୀ ସାରଦା ଦେବୀଙ୍କ ଆଦର୍ଶ ଜୀବନହିଁ ପ୍ରାଚୀନ ମହୀୟସୀ ମହିଳାଙ୍କ ଚରିତ୍ରବତ୍ତାର ପ୍ରମାଣ ।

ଶ୍ରୀ ରାମକୃଷ୍ଣଦେବଙ୍କ ଠାରୁ ଆରମ୍ଭ କରି ତାହାଙ୍କ ଯାବତୀୟ ପାର୍ଷଦଗଣ ପର୍ଯ୍ୟନ୍ତ ପ୍ରାଚୀନ ସନାତନ ଆଦର୍ଶ ରୀତି ନୀତିରେ ପୂର୍ଣ୍ଣ ଆସ୍ଥାବାନ ଓ ଶ୍ରଦ୍ଧାଶୀଳ ଥିଲେ । ସେଥିଲାଗି ସ୍ୱାମୀ ବିବେକା-ନନ୍ଦ କହିଛନ୍ତି—'ହେ ଭାରତବାସୀ ଭୁଲ ନାହିଁ ସୀତା, ସାବିତ୍ରୀ, ଦମୟନ୍ତୀ; ଭୁଲ ନାହିଁ ତୁମ୍ଭର ପବିତ୍ର ବିବାହ ବନ୍ଧନ' ଇତ୍ୟାଦି ।

କନ୍ୟା, ଭଗିନୀ, ଜାୟା, ଜନନୀ—ଏହି ଗୁଡ଼ିକ ଭାବର ଅଭିବ୍ୟକ୍ତି ସ୍ତ୍ରୀ ମାନଙ୍କ ମଧ୍ୟରେ ଦେଖାଯାଏ । ପିତୃ ଗୃହରେ ଥିବା ବେଳେ କନ୍ୟା । ସେତେବେଳେ ପିତାମାତାଙ୍କ ସେବା ଶୁଶ୍ରୂଷାରେ ନିରତା । ଭାଇମାନଙ୍କ ପ୍ରତି ସ୍ନେହଶୀଳା ଥିବାରୁ ଭଗିନୀ ବୋଲି

କଥିତା । ସ୍ୱାମୀ ଗୃହରେ ଥିବାବେଳେ ପତିପ୍ରାଣା ସହଧର୍ମିଣୀ ପଦବାଚ୍ୟା । ସନ୍ତାନବତ୍ସଳା ଜନନୀ ସନ୍ତାନମାନଙ୍କୁ ଆଦର ଯତ୍ନରେ ଲାଳନ ପାଳନ କରି ମାତୃତ୍ୱର ପରିଚୟ ଦିଅନ୍ତି । ନାରୀ ମାନେହିଁ ପୂର୍ବୋକ୍ତ ବୃତ୍ତି ସମ୍ବନ୍ଧରେ ସଂଯୁକ୍ତ ଥିବାରୁ ବୃତ୍ତି ନାମରେ ଅଭିହିତା । ଶ୍ରୀ ସାରଦା ଦେବୀଙ୍କ ଜୀବନ ଆଲୋଚନା କଲେ ଜଣା ଯାଏ ଯେ ତାଙ୍କ ଠାରେ ପୂର୍ବୋକ୍ତ ବୃତ୍ତି ତିନିର ବିକାଶ ଘଟିଥିଲା ସତ, କିନ୍ତୁ ତାଙ୍କର ଏହି ବୈଶିଷ୍ଟ୍ୟ ଥିଲା ଯେ କନ୍ୟା, ଭଗିନୀ, ଜାୟା, ଜନନୀରୂପେ ପ୍ରକଟିତ ହୋଇ ମଧ୍ୟ ସେ ତହିଁରେ ଆବଦ୍ଧା ନଥିଲେ । ଦୈହିକ ସମ୍ପର୍କ ଶୂନ୍ୟ ଥିବାରୁ ସେ ନିର୍ଲିପ୍ତା ଥିଲେ । ଯାହା କିଛି ତାଙ୍କର ମାତୃକ ଭାବ ଦେଖା ଯାଏ ସେ କେବଳ କର୍ତ୍ତବ୍ୟ ବୁଦ୍ଧିରେ ପାଳନ କରୁଥିଲେ । କର୍ତ୍ତବ୍ୟ ଓ ନିର୍ଲିପ୍ତତା ଯୋଗୁଁ ଏହି ବୃତ୍ତି ତିନିର ପୂର୍ଣ୍ଣବିକାଶ ହୋଇଥିଲା ଯାହା କି ସାଧାରଣରେ ଅସମ୍ଭବ ।

ପରବର୍ତ୍ତୀ କାଳରେ ଶ୍ରୀ ସାରଦା ଦେବୀ କେବଳ ଭକ୍ତ ଓ ତ୍ୟାଗୀମାନଙ୍କ ଦ୍ୱାରା ଯେ ପୂଜିତା ହୋଇଥିଲେ, ତାହା ନୁହେଁ, ସ୍ୱୟଂ ଶ୍ରୀ ରାମକୃଷ୍ଣ ଦେବ ମଧ୍ୟ ତାହାଙ୍କୁ ଅର୍ଚ୍ଚନା କରି ଯାଇଛନ୍ତି । ଶ୍ରୀ ସାରଦା ଦେବୀଙ୍କ ଦକ୍ଷିଣେଶ୍ୱରରେ ଅବସ୍ଥିତି ବେଳେ ଯେତେବେଳେ ତାହାଙ୍କ ବିଂଶତି ବର୍ଷ, ସେତେବେଳେ ଶ୍ରୀ ରାମ-କୃଷ୍ଣ ଦେବ ଫଳହାରିଣୀ ପୂଜା ଦିବସରେ ସାକ୍ଷାତ୍ ଜଗଜ୍ଜନନୀ ରୂପେ ତାହାଙ୍କୁ ଅର୍ଚ୍ଚନା କରି ସାଧନାର ସମାପ୍ତି କରିଥିଲେ । ଶ୍ରୀ ରାମକୃଷ୍ଣ ଦେବ ତାହାଙ୍କ ସମ୍ବନ୍ଧରେ କହିଛନ୍ତି,—'ସେ ସାରଦା—ସରସ୍ୱତୀ—ଜ୍ଞାନ ଦେବାକୁ ଆସିଛନ୍ତି । ରୂପ ଥିଲେ କାଳେ ଲୋକେ ଅଶୁଦ୍ଧ ମନରେ ଦେଖିବେ, ଅମଙ୍ଗଳ ହେବ,

ସେଥିପାଇଁ ରୂପ ଢାଙ୍କି ଅସିଛନ୍ତି । ସେ ଜ୍ଞାନଦାୟିନୀ, ମହାବୁଦ୍ଧିମତୀ ।
ସେ କ ସାମାନ୍ୟ ବ୍ୟକ୍ତି ! ସେ ମୋର ଶକ୍ତି ।'

ଶ୍ରୀ ସାରଦା ଦେବୀଙ୍କ ଅନ୍ତର୍ନିହିତ ଶକ୍ତି ଅସୀମ ଥିଲା । ସେ ସଦାବେଳେ ନିଜକୁ ପ୍ରଚ୍ଛନ୍ନ ଭାବରେ ରଖି ଯାଇଛନ୍ତି । କେବଳ ଶ୍ରୀ ରାମକୃଷ୍ଣ ଦେବଙ୍କୁ ଆଦର୍ଶ ରଖି ଅତି ନୀରବରେ ଜୀବନ ଅତିବାହିତ କରିଛନ୍ତି । କଥାରେ ବା କାର୍ଯ୍ୟରେ କେବେହେଲେ ସେ ନିଜକୁ ସ୍ୱତନ୍ତ୍ର ଭାବରେ ପ୍ରକାଶିତ କରି ନାହାନ୍ତି । ଏତେ ବଡ଼ ଅନୁକଳ୍ପ ଭାବ ଜଗତର ଇତିହାସରେ ବିରଳ । ତାହାଙ୍କର ସହନଶୀଳତା, ଧୈର୍ଯ୍ୟ, ଦୟା, କ୍ଷମା, କରୁଣା ବାସ୍ତବିକ ଅପରିମେୟ । ତାହାଙ୍କ ଶାନ୍ତ ଜୀବନରେ ବାହୁଲ୍ୟ ନାହିଁ, ଅଡ଼ମ୍ବର ନାହିଁ—ଅଥଚ କେତେ ଗମ୍ଭୀର, କେତେ ଉଜ୍ଜଳ, କେତେ ଦ୍ୟୋତନାପୂର୍ଣ୍ଣ । ତାହାଙ୍କ ତ୍ୟାଗ ଓ ସେବାମୟ ଜୀବନ ବାସ୍ତବିକ ମହିମାମୟ ଓ ଗୌରବମୟ ।

## ଦୀକ୍ଷା ଓ କରୁଣା

ଶ୍ରୀ ରାମକୃଷ୍ଣ ଦେବ ଯେପରି ସବୁବେଳେ ଅନ୍ତର୍ମୁଖ, ବାହ୍ୟଚେତନା ଶୂନ୍ୟ ଗମ୍ଭୀର ଆଧ୍ୟାତ୍ମିକ ରାଜ୍ୟରେ ବିଚରଣଶୀଳ, ସମାଧିସ୍ଥ ପୁରୁଷ, ତାହାଙ୍କ ପକ୍ଷରେ ଜନ ସମାଜରେ ପ୍ରଚାର କରିବା କଠିନ, ଏକପ୍ରକାର ଅସମ୍ଭବ କହିଲେ ଚଳେ । ସେଥିଲାଗି ସେ ଶ୍ରୀ ସାରଦାଙ୍କୁ କହୁଥାଇଥିଲେ, 'ତୁମ୍ଭଙ୍କୁ ଅନେକ ଜନହିତକର କାର୍ଯ୍ୟ କରିବାକୁ ହେବ । ବହୁ ସନ୍ତାନ ଆସିବେ, ମାଆ ମାଆ ଡାକରେ ତୁମ୍ଭେ ଅସ୍ଥିର ହେବ ।' ସତକୁ ସତ ଶ୍ରୀ ରାମକୃଷ୍ଣ

ଦେବ ଦେହରକ୍ଷା କରିବାର କେତେ ବର୍ଷ ପରେ ଅଗଣିତ ସାଧକ, ମୁମୁକ୍ଷୁ, ଆର୍ତ୍ତ, ଜିଜ୍ଞାସୁ ଆସିବାକୁ ଲାଗିଲେ । ଏଥି ପୂର୍ବରୁ କଥିତ ହୋଇଛି ଯେ ଶ୍ରୀ ବୃନ୍ଦାବନରେ ଶ୍ରୀ ରାମକୃଷ୍ଣଦେବ ଦିବ୍ୟ ଶରୀରରେ ଶ୍ରୀ ଶ୍ରୀ ମାଆଙ୍କୁ ଦର୍ଶନ ଦେଇ ଦୀକ୍ଷା ଦେବା ଲାଗି ତିନି ତିନି ଥର ଆଦେଶ ଦେଲେ । ସେହି ଦିନରୁ ତାହାଙ୍କର ଦୀକ୍ଷା ଦେବା ଆରମ୍ଭ । ଦୀକ୍ଷାର୍ଥୀ ଓ ଦର୍ଶନାର୍ଥୀ ସଂଖ୍ୟା କ୍ରମେ ବଢ଼ିବାକୁ ଲାଗିଲା । ଶ୍ରୀ ଶ୍ରୀ ମାଆଙ୍କ ନିକଟକୁ ଆସିବା ପୂର୍ବରୁ କେହି ସ୍ୱପ୍ନରେ ତାହାଙ୍କ ଦର୍ଶନ ପାଇ, କେହି ବା ସ୍ୱପ୍ନରେ ମନ୍ତ୍ରପ୍ରାପ୍ତ ହୋଇ, କେହି ବା ଅତ୍ୟନ୍ତ ରୋଗ ଶୋକରେ ଜର୍ଜରିତ ହୋଇ, କେହି ବା ଶ୍ରୀ ରାମକୃଷ୍ଣଦେବଙ୍କ କଥା ଶୁଣି, କେହି ବା ତାଙ୍କର ବହି ପଢ଼ି, କେହି ବା କୌଣସି ଭକ୍ତ ସାଧୁ ସମ୍ପର୍କରୁ ମାଆଙ୍କ କଥା ଜାଣି କୃପାପ୍ରାର୍ଥୀ ହେଲେ ।

ଏଠାରେ ତାହାର କେତେକ ବିବରଣୀ ଦିଆଗଲା । ଶ୍ରୀ ସୁରେନ୍ଦ୍ରକୁମାର ସେନ ନାମକ ଜନୈକ ଭକ୍ତଙ୍କର କିପରି ଦୀକ୍ଷା ହେଲା, କିପରି ସେ ଶ୍ରୀ ଶ୍ରୀ ମାଆଙ୍କ ପରିଚୟ ପାଇଲେ ତାହା ସେ ନିମ୍ନୋକ୍ତ ରୂପେ କହିଛନ୍ତି—"ବାଲ୍ୟକାଳରୁ ମୋର ଧର୍ମ ପ୍ରତି ଆଗ୍ରହ । ସ୍ୱାମୀ ବିବେକାନନ୍ଦ ଯେତେବେଳେ ଆମେରିକାରୁ ଫେରିଲେ ସେତେବେଳେ ତାହାଙ୍କ ସଙ୍ଗରେ ତିନି ବର୍ଷ କାଳ ବୁଲିଲି ଏବଂ ଦୀକ୍ଷା ଓ ସନ୍ନ୍ୟାସ ଦେବା ଲାଗି ବାରମ୍ବାର ଅନୁରୋଧ କଲି । ଅବଶେଷରେ ସ୍ୱାମୀଜୀ ସମ୍ମତ ହେଲେ, ଦୀକ୍ଷାର ଦିନ ଧାର୍ଯ୍ୟ ହେଲା । ଯେଉଁ ଦିନ ସ୍ୱାମୀଜୀ ଦୀକ୍ଷା ଦେବେ ସେ ଦିନ ଆହୁରି ଚାରି ଜଣ ପ୍ରାର୍ଥୀ ଥିଲେ । ସ୍ୱାମୀଜୀ ଦୀକ୍ଷା ଦେବା ଲାଗି ଠାକୁର ଘରକୁ ଯାଇ ପୂଜା

ଅର୍ଚ୍ଚନା କରି ଧ୍ୟାନସ୍ଥ ହେଲେ । ଧ୍ୟାନ ପରେ ପ୍ରତ୍ୟେକଙ୍କ
ନାମ ଧରି ତାଙ୍କୁ ଦୀକ୍ଷା ଦେଲେ । ସମସ୍ତଙ୍କ ଦୀକ୍ଷା ହୋଇଗଲା ।
ମୁଁ କେବଳ ଶେଷକୁ ବାକୀ ରହିଲି । ମୋତେ ସ୍ୱାମୀଜୀ ଡାକି
କହିଲେ, 'ମୁଁ ତୁମର ଗୁରୁ ନୁହେଁ—ଏକଥା ମୋତେ ଶ୍ରୀ ରାମ-
କୃଷ୍ଣ ଦେବ କହିଲେ ଏବଂ ଅଦ୍ଭୁତ ଠାକୁରେ ମୋତେ ଦେଖାଇଲେ
ତୁମକୁ ଯେ ଦୀକ୍ଷା ଦେବେ ସେ ମୋଠାରୁ ବଡ଼ । ଅତଏବ
ତୁମେ ହତାଶ ହୁଅ ନାହିଁ, ସମୟରେ ସବୁ ହେବ ।' ସ୍ୱାମୀଜୀଙ୍କ
ମୁଖରୁ ଏହି ନିଦାରୁଣ କଥା ଶୁଣି ମୁଁ ମର୍ମାହତ ହେଲି । ପୁଣି
ଭାବିଲି ମୋତେ ଠକାଇବା ପାଇଁ ଏହା ସ୍ୱାମୀଜୀଙ୍କର ଗୋଟାଏ
କୌଶଳ । ଶିଷ୍ୟ ହେବାକୁ ମୁଁ ଅଯୋଗ୍ୟ ବୋଲି ସେ ହୁଏତ ମନେ
କଲେ; ତେଣୁ ମୋତେ ଦୀକ୍ଷା ଦେଲେ ନାହିଁ ।

"ଯାହାହେଉ ଏହାପରେ ମନ ଦୁଃଖରେ କେତେକାଳ କଟି
ଗଲା । ଭୋଲା ନାମକ ସ୍ଥାନଟି ଥିଲା ସେତେବେଳେ ମୋର କର୍ମସ୍ଥଳ ।
ସେଠାରେ ହିଁ କର୍ମ କରୁଥାଏଁ । ଦିନେ ରାତିରେ ସ୍ୱପ୍ନରେ ଦେଖିଲି ଯେ
ଶ୍ରୀ ରାମକୃଷ୍ଣ ଦେବଙ୍କ କୋଳରେ ମୁଁ ବସିରହିଛି; ଏକ ଉଜ୍ଜ୍ୱଳ
ଦେବୀମୂର୍ତ୍ତି ମୋର ସମ୍ମୁଖରେ ଆସି କହିଲେ, ଗୋଟିଏ ମନ୍ତ୍ର ନିଅ ।'
ମୁଁ କହିଲି 'ନା, ମୋର ମନ୍ତ୍ରତନ୍ତ୍ରର ପ୍ରୟୋଜନ ନାହିଁ, ବର୍ତ୍ତମାନ
ଠାକୁରଙ୍କ କୋଳରେ ବସିଛି ।' ତଥାପି ସେ ମନ୍ତ୍ର ଦେବାକୁ ଜିଦ
କରିବାରୁ ପଚାରିଲି, 'ତୁମେ କିଏ ?' 'ମୁଁ ସରସ୍ୱତୀ'—ଏତିକିମାତ୍ର
ମନ୍ତ୍ର ଉଚ୍ଚାରଣ କଲେ । ମନ୍ତ୍ର ଶୁଣି ପଚାରିଲି ଏଥିରେ କଅଣ ହେବ ?
ଦେବୀ ଉତ୍ତର କଲେ, 'କବି ହୋଇପାରିବୁ ।' କବି ହୋଇପାରିବା
ଶୁଣି ଅଦ୍ଭୁତ ବିରକ୍ତ ହେଲି । ( ପାଲା ଗୀତ ଯେ ଗାଆନ୍ତି ଝାହାଙ୍କ
ବଙ୍ଗଳାରେ କବି କହନ୍ତି । ) କବିଙ୍କ ଉପରେ ମୋର କେତେ

ଭଲ୍‌ଧାରଣା ନଥିଲା । ସେଥିପାଇଁ ଅବଜ୍ଞା ଛଳରେ କହିଲି 'ମୁଁ ଭକ୍ତ ହେବାକୁ ଚାହେଁନାହିଁ ।' ଦେବୀମୂର୍ତ୍ତି ପୁଣି କହିଲେ, 'ଭକ୍ତିର ଅର୍ଥ ଭକ୍ତିକାର ପ୍ରଣାଳୀ କଅଣ ଜାଣ ? ଭକ୍ତିର ଅର୍ଥ ଜ୍ଞାନ ।' ଦେବୀ ଏହି କଥା କହି ଜପ ପର୍ଯ୍ୟନ୍ତ ଦେଖାଇ ୧୦୮ ଥର ଜପ କରିବାକୁ ଆଦେଶ କରି ଅନ୍ତର୍ହିତା ହେଲେ । ରାତି ପାହିଗଲା । ଉଠିପଡ଼ିଲି ।

"ଅଳ୍ପ କିଛିଦିନ ପରେ ସ୍ୱପ୍ନବୃତ୍ତାନ୍ତ ମଠକୁ ଯାଇ ସ୍ୱାମୀଜୀଙ୍କ ନିକଟରେ ପିଠାଇ କହିବାରୁ ସେ କହିଲେ, 'ଦେବସ୍ୱପ୍ନ ସତ୍ୟ, ଏହାକୁ ଦିବ୍ୟସ୍ୱପ୍ନ କହନ୍ତି । ସେହି ମନ୍ତ୍ର ଜପକଲେ ତୁମ୍ଭର ସବୁ ହୋଇଯିବ, ଅଉକିଛି କରିବାକୁ ହେବନାହିଁ ।' ସ୍ୱାମୀ ବିବେକାନନ୍ଦଙ୍କ କଥା ଶୁଣି ମଧ୍ୟ ମୋର ବିଶ୍ୱାସ ହେଲନାହିଁ । ତାହାଙ୍କୁ କହିଲି 'ଏହା ଅମୂଳକ ମାତ୍ର; ମୁଁ ସ୍ୱପ୍ନକୁ ବିଶ୍ୱାସ କରେନାହିଁ ।' ସେଥିରେ ସ୍ୱାମୀଜୀ ମୋତେ ତିରସ୍କାର କରି କହିଲେ, 'ତୁମ୍ଭର ଏ ଧାରଣା ଭୁଲ, ବୋଧୋଦୟ କରି ପ୍ରକୃତ ଏଡ଼ି ଶୁଣି ବୋଧହୁଏ ଏହିପରି ଭାବ ଆସିଛି । ଅପେକ୍ଷାକର, ଏହା ବାସ୍ତବିକ ସତ୍ୟ, ଏହି ମନ୍ତ୍ର ଜପକର, ଅଚିରେ ସଶରୀରରେ ସେହି ମନ୍ତ୍ରଦାତ୍ରୀ ମୂର୍ତ୍ତି ଦେଖିବାକୁ ପାଇବ ।'

"ମହାପୁରୁଷଙ୍କ ବାକ୍ୟ ଅନ୍ୟଥା ହୁଏନାହିଁ । ୧୩୧୮ ସାଲରେ ଜୟରାମବାଟୀ ଗଲି । ସେଠାରେ ଶ୍ରୀ ଶ୍ରୀ ମାଅଙ୍କ ଦର୍ଶନ ପାଇଲି । ମାଅ ମୋତେ ତାଙ୍କ ନିକଟେ ଦୀକ୍ଷା ଦେଲେ । ଯେତେବେଳେ ମାଅ ମୋତେ ଦୀକ୍ଷା ପ୍ରଦାନ କଲେ, ସେତେବେଳେ ସ୍ୱପ୍ନଦୃଷ୍ଟ ସମସ୍ତ ଘଟନା ମନରେ ଉଦିତ ହେଲା, ଏକାବେଳକେ ମୋର ବାହ୍ୟ ଚେତନା ଲୁପ୍ତ ହେଲା । ଏହାର କିଛି ରହସ୍ୟ ବୁଝି ପାରିଲିନାହିଁ । କ୍ଷଣ କାଳ ନିମନ୍ତେ ବାହ୍ୟ ଚେତନା ଲୁପ୍ତହେଲେ ସୁଦ୍ଧା ଅନିର୍ବାଚନୀୟ ଆନନ୍ଦାନୁଭୂତ

ଲୁପ୍ତ ହେଲନାହିଁ । ଯେତେବେଳେ ପ୍ରକୃତସ୍ଥ ହେଲି ସେତେବେଳେ ଦେଖିଲି ଯେ ସ୍ୱପ୍ନଦୃଷ୍ଟ ଦେବୀମୂର୍ତ୍ତି ଓ ମାଅଙ୍କ ମୂର୍ତ୍ତି ଏକ । ମାଅଙ୍କୁ କହିଲି,ମା,ଅ ! କିଛୁଦିନ ପୂର୍ବରୁ ସ୍ୱପ୍ନରେ ମନ୍ତ୍ର ପାଇଥିଲି । ଏହା କହିବା ମାତ୍ରେ ମାଅ କହିଲେ 'ସବୁ ମିଳୁଛି ତ ? ଠିକ ମିଳିଲି ତ ? ଅର୍ଥାତ୍ ତୁମ୍ଭେ ଯେଉଁ ମନ୍ତ୍ର ସ୍ୱପ୍ନରେ ପାଇଥିଲ ବର୍ତ୍ତମାନ ଯେଉଁ ମନ୍ତ୍ର ନେଲ ଏକ, ମୂର୍ତ୍ତି ମଧ୍ୟ ଏକ ।"

ସ୍ୱାମୀ ତନ୍ମୟାନନ୍ଦଙ୍କର କପରି ଦୀକ୍ଷା ହେଲା, ପରେ କିପରି ସେ ସାଧୁ ହେଲେ, ତାହାର ବିବରଣୀ ସେ ନିମ୍ନୋକ୍ତରୂପେ ପ୍ରକାଶ କରିଛନ୍ତି—"ଗୃହସ୍ଥାଶ୍ରମରେ ଥିବାବେଳେ ଥରେ ରାତିରେ ସ୍ୱପ୍ନ ଦେଖିଲି, ଘରଦ୍ୱାର କିଛି ନାହିଁ, ଖଣ୍ଡେ ପଡ଼ିଆରେ ଛିଡ଼ା ହୋଇ-ଅଛି । ଏକ ଜ୍ୟୋତିର୍ମୟ ସନ୍ୟାସୀ ନିକଟକୁ ଆସି ମୋତେ ଡାକି କହିଲେ,'ତୁମ୍ଭେ ଯିବ ତ ଚାଲିଆସ ।' ତତ୍ପରେ ଏହିପରି ଡାକିବାରୁ ମୁଁ ଯାଉଛି, ଯାଉଛି, କହି ବିଛଣାରୁ ଉଠି କୁଦି ପଡ଼ି ଦ୍ୱାର ପାଖକୁ ଆସିଲି । କିନ୍ତୁ କବାଟ ବନ୍ଦ ଥିବାରୁ ଖୋଲିପାରିଲି ନାହିଁ । କବାଟ ଖୋଲି ନ ପାରିବାରୁ ନିଦ ବାଉଳାରେ ସେଠାରେ ଅଚେତ ହୋଇ ପଡ଼ିଗଲି । ମୋର ଚାଟିତ୍ରୁଣ୍ଡ ଶୁଣି ବାବା "ଆସି"ଡାକିବାରୁ ମୋର ବାହ୍ୟ ଚେତନା ଫେରି ଆସିଲା । ସ୍ତ୍ରୀ ଲୋକମାନେ କହିଲେ 'ଏହା ନିଶା ଡାକ ।' ମୁଁ କହିଲି ଏହା ତାହା ନୁହେଁ । ଜଣେ ସନ୍ୟାସୀଙ୍କୁ ସ୍ୱପ୍ନରେ ଦେଖିଲି, ସେ ସଙ୍ଗରେ ଯିବାକୁ ଡାକିଲେ; ତୁମ୍ଭମାନେ କାହିଁକି ବାଧା ଦେଲ ? ବର୍ଷେ ଗଲା । ସେ କଥା ସବୁ ଭୁଲିଗଲି । ଏହାମଧ୍ୟରେ ପିତାଙ୍କର ସମସ୍ତ ହୋଇଗଲା । ତାଙ୍କ ଶ୍ରାଦ୍ଧ କ୍ରିୟା ଶେଷହେବା ପରେ ମୋ ପେଟରେ ସାମାନ୍ୟ ବେଦନାର ସୂତ୍ରପାତ ହେଲା । କିନ୍ତୁ ସେହି ଉଦର ବେଦନା

କ୍ରମଶଃ ବଢ଼ିବାକୁ ଲାଗିଲା । ଅନେକ ଚିକିତ୍ସା କରି ମଧ୍ୟ କୌଣସି ଫଳ ହେଲାନାହିଁ । ଦିନେ ରାତିରେ ଏପରି ପେଟ ବେଦନା ହେଲା ଯେ ସହ୍ୟ କରିବା ଅସମ୍ଭବ ହେଲା । ତେଣୁ ବିଷପାନ କରି ଦେହତ୍ୟାଗ କରିବା ଛଡ଼ା ଅନ୍ୟ ଉପାୟ ନାହିଁ ଭାବିଲି । ବିଷ ବା କେଉଁଠୁ ମିଳିବ ? ଶୁଣିଥିଲି କନିଅର ଫଳର ମଞ୍ଜି ଖାଇଲେ ମଣିଷ ମରିଯାଏ । ବଗିଚାରେ କନିଅରଫଳ ହୋଇଥିଲା । ଧୀରେ ଧୀରେ ତାହା ସଂଗ୍ରହ କରିବାକୁ ଯିବାବେଳେ ଠିକ ସେହି ସମୟରେ ଶୁଣିଲି— ସତେ କି କିଏ ଜଣେ କହୁଛି—'ତୁ ମରିବୁ କାହିଁକି ? ସାଧୁ ହୋଇଯା । ଘରେ ତୋତେ ଡାକିଥିଲି, ସେତେବେଳେ ନଯିବାରୁ ତୋହର ଏ ବ୍ୟାଧି ହୋଇଛି । ବର୍ତ୍ତମାନ ତୁ ବାଣେଶ୍ୱର ଯା, ସେଠାରୁ ଔଷଧ ଆଣି ଖାଇଲେ ଭଲ ହୋଇଯିବୁ ।'

"ଏହା ଦୈବାଦେଶ ଭାବି ଘରୁ ବାହାରି ପଡ଼ିଲି । ଯାଉଁ ଯାଉଁ ବାଟରେ ଦୁଇଜଣ ସନ୍ନ୍ୟାସୀଙ୍କ ସହିତ ଭେଟ ହେଲା । ସେମାନଙ୍କ ନିକଟରେ ସବୁକଥା କହିବାରୁ ସେମାନେ କହିଲେ 'ତୁମେ ନିଶ୍ଚୟ ଭଲ ହୋଇଯିବ ।' ଭଲହୋଇ ସାଧୁ ହେବାକୁ ଇଚ୍ଛା ପ୍ରକାଶ କରିବାରୁ ସେମାନେ କହିଲେ 'ବଡ଼ଚେଙ୍ଗଠାରେ ଶ୍ରୀରାମକୃଷ୍ଣ ବିଦ୍ୟାଳୟ ଅଛି, ସେଠାରେ ରହିବ ।' ସତକୁ ସତ ଆରୋଗ୍ୟ ଲାଭ କଲି । ଭଲ ହୋଇ ଯିବା ପରେ ସାଧୁଙ୍କ ନିର୍ଦ୍ଦେଶାନୁଯାୟୀ ସେହି ଶ୍ରୀ ରାମକୃଷ୍ଣ ବିଦ୍ୟାଳୟକୁ ଯାଇ ଦେଖିଲି ଠାକୁରଙ୍କ ଛବି ଟଙ୍ଗା ହୋଇଛି । ଶ୍ରୀ ରାମକୃଷ୍ଣଙ୍କ ଛବି ଦେଖିବା ମାତ୍ରେ ସ୍ୱପ୍ନଦୃଷ୍ଟ ସନ୍ନ୍ୟାସୀ ହିଁ ଏହି ମୂର୍ତ୍ତି ବୁଝିପାରିଲି । ତାହା ପୂର୍ବରୁ ଶ୍ରୀ ରାମକୃଷ୍ଣ ଦେବଙ୍କ କଥା ଜାଣି ନଥିଲି । ସେଠାରୁ ତାହାଙ୍କର ଖଣ୍ଡିଏ ଛବି ନେଇ ପୂଜା କରିବାକୁ ଲାଗିଲି । କ୍ରମେ ଦୀକ୍ଷା ନେବା ଲାଗି ମନ

ବ୍ୟାକୁଳ ହୋଇ ଉଠିଲି । ଶ୍ରୀ ଶ୍ରୀ ମାଅଙ୍କ କଥା ଜାଣିଲି । ସେତେବେଳେ ସେ କଲିକତାରେ ଥିବାରୁ ଦୀକ୍ଷା ହେଲନାହିଁ । ସେ ଯେତେବେଳେ ଜୟରାମବାଟୀ ଆସିଲେ ସେତେବେଳେ ତାହାଙ୍କଠାରୁ ଦୀକ୍ଷା ଓ ବ୍ରହ୍ମଚର୍ଯ୍ୟ ଗ୍ରହଣ କଲି ।"

ଏହିପରି ଶତ ଶତ ବ୍ୟକ୍ତି ଶ୍ରୀ ଶ୍ରୀ ମାଅଙ୍କ ଠାରୁ ଦୀକ୍ଷାପ୍ରାପ୍ତ ହୋଇ କୃତାର୍ଥ ହୋଇଛନ୍ତି । ସମସ୍ତଙ୍କର ବର୍ଣ୍ଣନା ଏହି କ୍ଷୁଦ୍ର ପୁସ୍ତକରେ ଦେବା ସମ୍ଭବ ନୁହେଁ । ଯେଉଁମାନେ ମାଅଙ୍କ ବିଷୟରେ ଅଧିକ ଜାଣିବାକୁ ଚାହାନ୍ତି, ବ୍ରହ୍ମଚାରୀ ଅକ୍ଷୟଚୈତନ୍ୟଙ୍କ ପ୍ରଣୀତ 'ଶ୍ରୀ ଶ୍ରୀ ସାରଦା ଦେବୀ' ଓ 'ଶ୍ରୀଶ୍ରୀ ମାୟେର କଥା' ଗ୍ରନ୍ଥମାନ ପାଠ କଲେ ସେମାନେ ତାହାଙ୍କ କଥା ହୃଦୟଙ୍ଗମ କରି ପାରିବେ ।

ଶ୍ରୀ ଶ୍ରୀ ମାଅଙ୍କ ଦୀକ୍ଷାଦେବା ପ୍ରଣାଳୀ ଅତି ସହଜ ସରଳ ଥିଲା । ସେଥିରେ ଅନୁଷ୍ଠାନର ବାହୁଲ୍ୟ ନଥିଲା । ମାଅ ନିତ୍ୟ ଠାକୁରଙ୍କୁ ପୂଜା କରୁଥାନ୍ତି । କେହି ଦୀକ୍ଷାର୍ଥୀ ଉପସ୍ଥିତ ହେଲେ ପୂର୍ବାହ୍ଣରେ ପୂଜାସାରି ତାହାଙ୍କୁ ଠାକୁରଙ୍କ ଛବି ସାମନାରେ ବସାଇ ଅଚମନାଦି କରାଇ ଦୀକ୍ଷା ଦିଅନ୍ତି । ଅଧିକାରୀ ଭେଦରେ ବିଭିନ୍ନ ବ୍ୟକ୍ତିଙ୍କୁ ବିଭିନ୍ନ ଇଷ୍ଟମନ୍ତ୍ର ଦେଉଥିଲେ । କାହାର କେଉଁ ଇଷ୍ଟ ମୂର୍ତ୍ତି ସେ ଧ୍ୟାନରେ ଜାଣି ପାରୁଥିଲେ । କାହାର ଇଷ୍ଟ କୃଷ୍ଣ, କାହାର ବା ଶକ୍ତି, କାହାର ବା ବିଷ୍ଣୁ । ଦୀକ୍ଷାର୍ଥୀ କିଛି ନ କହିଲେ ସୁଦ୍ଧା 'ତୁମ୍ଭର ଏହାହିଁ ଇଷ୍ଟମନ୍ତ୍ର' କହି ଦେଉଥିଲେ । ପରେ ସନ୍ତକୁ ସତ କୁଳ ପରମ୍ପରା କ୍ରମେ ଯେଉଁ ମନ୍ତ୍ର ଚାଲି ଆସିଛି ସେ ତାହା ବୁଝି ପାରୁଥିଲା ଏବଂ ସବୁ ମିଳି ଯାଉଥିଲା ।

ଅବତୀର୍ଣ୍ଣ ଜଗଦ୍‌ଗୁରୁ—ଶକ୍ତି ଯେତେବେଳେ ଲୋକ କଲ୍ୟାଣ ସାଧନରେ ପ୍ରବୃତ୍ତ ହୁଅନ୍ତି ସେତେବେଳେ ବଶଷ

ଉପାୟରେ ଦୂର ଦୂରାନ୍ତରୁ ଭକ୍ତମାନଙ୍କୁ ଆକର୍ଷଣ କରି ଆଣନ୍ତି ଏବଂ ସେମାନଙ୍କର ମନସ୍କାମନା ପୂର୍ଣ୍ଣକରନ୍ତି । ଶ୍ରୀଶ୍ରୀ ମାଆଙ୍କ ନିକଟକୁ ଅଲୌକିକ କଳ୍ପନାତୀତ ଭାବରେ କେତେ କେତେ ଲୋକ ଆସି ଯେ ତାହାଙ୍କ ଆଶ୍ରୟ ପାଇଥିଲେ ତାହାର କଳନା ନାହିଁ । ଭାରତର ସବୁ ପ୍ରାନ୍ତରୁ ଭକ୍ତମାନେ ଆସି ତାହାଙ୍କୁ ଜୀବନର ଗତି-ମୁକ୍ତିଦାୟିନୀ ବୋଲି ମଣିଥିଲେ । ଏପରି କି ସୁଦୂର ଆମେରିକା ପ୍ରଭୃତି ପାଶ୍ଚାତ୍ୟ ଦେଶୀୟ ସ୍ତ୍ରୀ ପୁରୁଷ ମଧ୍ୟ ତାହାଙ୍କ କୃପାରୁ ବଞ୍ଚିତ ହୋଇ ନଥିଲେ । ବିଶେଷତଃ ବଙ୍ଗଦେଶୀୟ ସ୍ତ୍ରୀ ପୁରୁଷମାନେ ଶ୍ରୀ ଶ୍ରୀ ମାଆଙ୍କୁ ଆପଣାର କରି ପାରିଥିଲେ ଏବ ସେମାନଙ୍କ ସଂଖ୍ୟାହିଁ ଅଧିକ । ଦୀକ୍ଷାର୍ଥୀ ମାଆଙ୍କ ନିକଟକୁ ଆସି ସଫଳକାମ ହୋଇଛନ୍ତି । କାହାରିକି ସେ ନିରାଶ କରି ନାହାନ୍ତି । ତାହାଙ୍କ ଅମୀୟ ସ୍ନେହ ଧାରା କୃପାପ୍ରାର୍ଥୀଙ୍କ ଉପରେ ସମାନ ଭାବରେ ବର୍ଷିତ ହେଉଥିଲା । ସମାଗତ ସ୍ତ୍ରୀ ପୁରୁଷ ସମାନ ଭାବରେ ଆଦୃତ ହେଉଥିଲେ ।

ଜୟରାମବାଟୀକୁ କେହି ଭକ୍ତ ବା ଦର୍ଶନାର୍ଥୀ ଆସିଲେ ଶ୍ରୀ ଶ୍ରୀ ମାଆ ନିଜ ହାତରେ ରାନ୍ଧି ତାଙ୍କୁ ଭୋଜନ କରାନ୍ତି; ଏପରିକି ସେମାନଙ୍କ ଉଚ୍ଛିଷ୍ଟ ପତ୍ର ନିଜେ ଉଠାନ୍ତି କିମ୍ବା ଥାଳି ମାଜନ୍ତି । କେବେହେଲେ ତାହାଙ୍କୁ ଉଚ୍ଛିଷ୍ଟ ବାସନ ମଜାଇ ଦିଅନ୍ତି ନାହିଁ । 'ମାଜିବାର ଅନ୍ୟଲୋକ ଅଛି, ତୁମ୍ଭେ ମୁହଁ ଧୁଅ' ବୋଲି କହି ସେ ନିଜେ କରନ୍ତି । କଲିକତାରୁ ଭକ୍ତମାନେ ଗଲେ ସେମାନଙ୍କ ପାଇଁ ଜଳଖିଆ, କାହାରି ପାଇଁ ରୁଟି ବ୍ୟବସ୍ଥା କରିବାକୁ ପଡ଼େ । ଥାଳିରେ ବେଶୀ ଭାତ ଦେଖିଲେ ଖାଇବେ ନାହିଁ ଭାବି ବାଢ଼ିବା ସମୟରେ ଚପି ଚୁପି ଅଳ୍ପ ଦିଶିଲା ଭଳି ବାଢ଼ନ୍ତି । ଶ୍ରୀମ ( ମାଷ୍ଟର ମହାଶୟ) କହନ୍ତି 'ଭାତ ବାଢ଼ିବା ଦେଖି ବୁଝା ପାଉଥାଏ ଯେ

ଏହା ମାଆ ବାଢ଼ିଛନ୍ତି ।' ତାହା ନ ହେଲେ ଏପରି ଭାବରେ ଆଲରେ ସଜାଡ଼ିବା ଅନ୍ୟ ପକ୍ଷରେ ସମ୍ଭବ ନୁହେଁ ।

ଅଶିକ୍ଷିତ ବ୍ୟକ୍ତିମାନଙ୍କୁ ଦୀକ୍ଷା ଦେଇ ଯେ ମାଆ ନିଶ୍ଚିନ୍ତ ରହୁଥିଲେ ତାହା ନୁହେଁ । ପରନ୍ତୁ ସେମାନଙ୍କର ଇହକାଳ ପରକାଳର ସଦ୍‌ଗତି ନିମନ୍ତେ ସେ ଚିନ୍ତିତ ହେଉଥିଲେ । ଦୀକ୍ଷାଦାନ ସଙ୍ଗେ ସଙ୍ଗେ ଇଷ୍ଟ ସାକ୍ଷାତ୍କାର ପଥ ମୁକ୍ତ କରି ଦେଉଥିଲେ । ଅଶିକ୍ଷିତ ବ୍ୟକ୍ତିମାନଙ୍କ ମଧ୍ୟରୁ କିଏ ଯେବେ କହିଲା, 'ମାଆ ! ଜପବେଶୀ କରି ପାରୁ ନାହିଁ, ମନ ମୋଟେ ସ୍ଥିର ହେଉ ନାହିଁ,' ତାହାଙ୍କୁ ଅଭୟ ଦେଇ ମାଆ କହନ୍ତି, 'ତୁମ୍ଭେ ସେଥିଲାଗି ଚିନ୍ତା କର ନାହିଁ, ଯେତେ ଦୂର ପାରିବ ଜପ କରି ଯାଅ, ଆଉ ସବୁ ମୁଁ କରିବି' । ଦୀକ୍ଷା ନେବା ପରେ କିଏ ଯେବେ କହିଲା, 'ମାଆ ! କେତେଥର ଜପ କରିବି ?' ସେଥିରେ ମାଆ ଉପଦେଶ ଦିଅନ୍ତି, 'ବାବା, ତୁମ୍ଭେ ସଂସାରୀ, ତୁମ୍ଭେ ବେଶୀ ଜପ କରି ପାରିବ ନାହିଁ, ଅତଏବ ତୁମ୍ଭେ ବାରଥର ଜପ କରିବ ।' କେହି ହୁଏତ ମନ୍ତ୍ର ଜପ ପ୍ରଣାଳୀ ଭୁଲି ଯାଇଛନ୍ତି । ରୋଗରେ ପୀଡ଼ିତ ହୋଇ ତାହାର କିଛି କଥା ମନେ ନାହିଁ । ତାହାଙ୍କୁ ମାଆ ବୁଝାନ୍ତି 'ଯାହା କରିବାକୁ ମୁଁ କରିବି, ସେଥିଲାଗି କିଛି ଭାବ ନାହିଁ ।' ତାହାର ତାହାଙ୍କୁ କହନ୍ତି, 'ଯଦି ନପାର ଦିନରେ ଥରେ ମାଳା ଜପ କରିବ, ଠାକୁରଙ୍କୁ ଭକ୍ତିପୂର୍ଣ୍ଣ ଭାବରେ ପ୍ରଣାମ କରିବ ।'

ଶ୍ରୀ ଶ୍ରୀ ମାଆ ଅନ୍ତିମ ଶଯ୍ୟାରେ ଶାୟିତା ହୋଇ ମଧ୍ୟ ଭକ୍ତଙ୍କ ଚିନ୍ତାରେ ବିଭୋର ଥିଲେ । ଏପରିକି ଦୁରାରୋଗ୍ୟ ବ୍ୟାଧିରେ ଯେତେବେଳେ ପୀଡ଼ିତା ଓ ଉତ୍‌ଥାନଶକ୍ତି ରହିତା ସେତେବେଳେ ପୁଅ ଶିଷ୍ୟ ସନ୍ତାନଙ୍କ ପାଇଁ ସେ ଜପ କରୁଥାନ୍ତି । କହୁଥାନ୍ତି—କେହି

ତ କିଛି କରିବେ ନାହିଁ, ସେଥିଲାଗି ସେମାନଙ୍କ ପାଇଁ ମୋତେ କରିବାକୁ ପଡ଼ୁଛି । ଶ୍ରୀ ଶ୍ରୀ ମାଅଙ୍କ କରୁଣା, ସ୍ନେହର କଥା ଭାବିଲେ କଠିନ ହୃଦୟ ମଧ୍ୟ ଦ୍ରବୀଭୂତ ହୁଏ । ମାୟିକ ସ୍ନେହ ପ୍ରୀତି ସୀମାବଦ୍ଧ କିନ୍ତୁ ଏହି ମହୀୟସୀ ଦେବୀଙ୍କର ଯେଉଁ କରୁଣା ଓ ସ୍ନେହ ତାହା ସର୍ବବ୍ୟାପୀ ଥିଲା । ଶିଷ୍ୟ ସନ୍ତାନମାନଙ୍କୁ ମାୟିକ ଭାବରେ ଯେ ଏତେ ଯତ୍ନ କରୁଥିଲେ ତାହା ନୁହେଁ, ସେମାନେ କିପରି ଭବ ବନ୍ଧନରୁ ମୁକ୍ତ ହେବେ ଏହାହିଁ ତାହାଙ୍କର ପ୍ରଧାନ ଚିନ୍ତା ଥିଲା । ସେମାନଙ୍କ ପାଇଁ ଠାକୁରଙ୍କ ନିକଟରେ ସେ ଦିନ ରାତି ପ୍ରାର୍ଥନା କରୁଥିଲେ । ଦୂର ଦୂରାନ୍ତରରୁ ଲୋକମାନେ ଆସି କେତେ ଅଳି ଅଝଟ ନ କରିଛନ୍ତି, କେତେ ଓଜର ଆପତ୍ତି ନ କରିଛନ୍ତି; କିନ୍ତୁ ସନ୍ତାନବତ୍ସଳା ଜନନୀ ସେମାନଙ୍କର ସମସ୍ତ ଅଝଟ ସହ୍ୟ କରିଛନ୍ତି । ଏପରିକି ଅବିବେଚନାପ୍ରସୂତ ଅଝଟ ହେଲେ ମୁଖା ଅମ୍ଳାନ ବଦନରେ ତାହା ପୂରଣ କରିବାକୁ ତତ୍ପର ହେଉଥାନ୍ତି । ଯଦି କେହି ବା ରୋଗ ଯନ୍ତ୍ରଣାରେ ଅଧୀର ହୋଇ, କେହି ବା ବହୁ ପାପ କରି ଆସିଥାନ୍ତି, ତେବେ ମାଅ ଅକାତରେ ସେମାନଙ୍କୁ ଅଭୟ ଅଙ୍କରେ ସ୍ଥାନ ଦେଇ ସର୍ବବିଧ ପାପତାପରୁ ମୁକ୍ତ କରିଥାନ୍ତି । ମାଅଙ୍କ ସ୍ନେହ-ପୀୟୂଷ ଯେଉଁମାନେ ଅଳ୍ପମାତ୍ର ପାନ କରିଛନ୍ତି ସେମାନଙ୍କର ଜାଗତିକ ସ୍ନେହ ବନ୍ଧନ ଛିନ୍ନ ହୋଇ ଯାଇଛି ଏବଂ ସ୍ତ୍ରୀ, ପୁତ୍ର, ଭାଇ, ବନ୍ଧୁଙ୍କ ସ୍ନେହ ଯେ ଅସାର ତାହା ହୃଦୟଙ୍ଗମ କରିବାକୁ ବିଳମ୍ବ ହୋଇନାହିଁ । ତାହାଙ୍କୁ ଆଶ୍ରୟ କରି ଗର୍ଭଧାରିଣୀ ଜନନୀଙ୍କ ଅଭାବ ମଧ୍ୟ ଏକାବେଳକେ ବିସ୍ମୃତ ହୋଇଛନ୍ତି । ଭକ୍ତ ସନ୍ତାନମାନଙ୍କୁ ମାଅ ଆଦର ଯତ୍ନ କଲାବେଳେ ଏହା ଯେ ସନ୍ତାନବତ୍ସଳା ଜନନୀଙ୍କଠାରୁ ଭିନ୍ନ, ଏହା ଯେ ବାତ୍ସଲ୍ୟ ଭାବର ପୂର୍ଣ୍ଣ ବିକାଶ ନୁହେଁ, କିଏ କହିବ ? ଏହା ହିଁ ସେହି ସମଷ୍ଟିରୂପା

ଜଗତ୍‌ଜନନୀଙ୍କ ସ୍ନେହର ପ୍ରତିରୂପ ! ଶ୍ରୀ ରାମକୃଷ୍ଣଦେବଙ୍କ ଧ୍ୟାନ-ଗଠିତା ମାନସ ପ୍ରତିମା ଶ୍ରୀ ସାରଦା ଦେବୀଙ୍କ ଭଳି ମାତୃସ୍ନେହର ପ୍ରସ୍ରବଣ ବାସ୍ତବିକ ପୃଥିବୀ ଇତିହାସରେ ବିରଳ ।

ଏହି ସମାଗତ ସନ୍ତାନମାନଙ୍କ ନିମନ୍ତେ ମାଆଙ୍କର ବିଶ୍ରାମ ନେବାକୁ ଅବସର ନ ଥିଲା । ସେ ବାଲ୍ୟକାଳରେ ପିତାମାତାଙ୍କର, ଯୌବନରେ ପତିଙ୍କର ସେବାରେ ଯେପରି ନିଶିଦିନ ଲାଗିଥିଲେ ସେହିପରି ପରିଣତ ବୟସରେ ଗୁରୁ ପଦବୀରେ ଆରୂଢା ହୋଇ ମଧ୍ୟ ତାଙ୍କର କର୍ମର ବିରାମ ନ ଥିଲା । ଅସମୟ, ଅବେଳରେ କେହି ଆସି ଉପସ୍ଥିତ ହେଲେ, କେହି ରାନ୍ଧିବାକୁ ରାଜି ହୁଅନ୍ତି ନାହିଁ ; କେହି ବା ବିରକ୍ତ ହୁଅନ୍ତି କିନ୍ତୁ ଏହି ମାତୃରୂପିଣୀ ଶ୍ରୀ ସାରଦା ହସ ହସ ମୁହଁରେ ନିଜେ ସବୁ ରାନ୍ଧି ବାଢ଼ି ସେମାନଙ୍କୁ ଭୋଜନ କରାଇ ତୃପ୍ତ କରନ୍ତି । କେହି ବା ସଂସାରର ଜ୍ୱାଳା ଯନ୍ତ୍ରଣାରେ ଦଗ୍ଧ ହୋଇ ଉଦ୍ଧାର ପାଇବା ଆଶାରେ ଆସି ଏହି ଶାନ୍ତ ଅପୂର୍ବ ମାତୃମୂର୍ତ୍ତି ଦେଖି ଶୀତଳ ହୁଅନ୍ତି । କେହି ବା ପ୍ରଚଣ୍ଡ ଖରାରେ ଆସି ଅସୁ ଦେହ ଝାଳରେ ବୁଡ଼ି ଯାଇଛି, ମାଆ ସଙ୍ଗେ ସଙ୍ଗେ ବିଞ୍ଚଣାରେ ବିଞ୍ଚି ତାହାଙ୍କୁ ଶୀତଳ କରନ୍ତି । ପୁଣି କହନ୍ତି, 'ବାବା ! ଆସିବାବେଳେ ରାସ୍ତାରେ କେତେ କଷ୍ଟ ହୋଇଛି ।' ତା ପରେ ଜଳଖିଆ ଦେଇ ବିଶ୍ରାମ କରିବାକୁ କହି ସେମାନଙ୍କର ଆହାରାଦିର ବ୍ୟବସ୍ଥା କରନ୍ତି । ଖାଇପିଇ ବିଶ୍ରାନ୍ତି ନେବାପରେ କିଏ କାହିଁକି କି ଉଦ୍ଦେଶ୍ୟରେ ଆସିଛି ତାହାର ତତ୍ତ୍ୱ ନିଅନ୍ତି । ସମୀପାଗତ ଭକ୍ତମାନେ ଯେ ଏହାଙ୍କୁ କେବଳ ଗତିମୁକ୍ତିଦାୟିନୀ ଗୁରୁ ବୋଲି ମନେ କରୁଥିଲେ ତାହା ନୁହେଁ, ପରନ୍ତୁ ଏପରି ସ୍ନେହଶୀଳା ଜନନୀ ମଧ୍ୟ ଦୁର୍ଲ୍ଲଭ—ଏହା ମର୍ମେ ମର୍ମେ ଅନୁଭବ କରୁଥିଲେ । ମାଆଙ୍କ ସହସ୍ର ସହସ୍ର

ପୁନଶ୍ଚ କନ୍ୟା ପେଇଁ ସ୍ନେହ-ସୁଧାରେ ପରିପ୍ଳୁତ ସେମାନଙ୍କର ସ୍ନେହାଭିବ୍ୟକ୍ତିର ସମ୍ପୂର୍ଣ୍ଣ ଚିତ୍ର କିଏ ବର୍ଣ୍ଣନ କରିବ ? ଏଠାରେ କେବଳ ବନ୍ଧଗୃହୀ ଅକ୍ଷୟ ଚୈତନ୍ୟ ପ୍ରଣୀତ 'ଶ୍ରୀ ଶ୍ରୀ ସାରଦାଦେବୀ' ପୁସ୍ତକରୁ କେତେକ ବିବରଣୀ ଦିଆଗଲା—

ଭକ୍ତଚୂଡ଼ାମଣି ଶ୍ରୀଯୁକ୍ତ ଗିରୀଶଚନ୍ଦ୍ର ଘୋଷ ମାଆଙ୍କୁ ଥରେ ପଚାରିଥିଲେ, 'ତୁମେ କି ପ୍ରକାର ମାଆ ?' ସଙ୍ଗେ ସଙ୍ଗେ ମା ଉତ୍ତର ଦେଲେ, 'ସତ୍ୟ ସତ୍ୟ ମାଆ । ମୁଁ ଗୁରୁପତ୍ନୀ ରୂପେ ନୁହେଁ, ମଥା ପ୍ରସାଦଦେଇ ବନାଇଥିବା ମାଆ ନୁହେଁ, କଥାରେ କେବଳ ମାଆ ନୁହେଁ, ଅସଲ ମାଆ ।' ଅନ୍ତରଙ୍ଗଙ୍କେ ଭକ୍ତ କିପରି ମାଆଙ୍କ ସ୍ନେହରେ ମୁଗ୍ଧ ହୋଇଥିଲେ ତାହା ସେ ନିଜେ ନିମ୍ନୋକ୍ତ ରୂପେ ବର୍ଣ୍ଣନା କରିଛନ୍ତି —ବାଲ୍ୟ କାଳରୁ ପିତୃମାତୃହୀନ ଥିବାରୁ ପିଉସୀ ମୋତେ ଲାଳନ ପାଳନ କରିଥିଲେ । ଅନେକ ଦୁଃଖ କଷ୍ଟରେ ଜୀବନ ଯାପନ କରିବାକୁ ପଡ଼ୁଥିଲା । ଯେତେବେଳେ ମୋର ଷୋଡ଼ଶ ବର୍ଷ ବୟସ ସେତେବେଳେ ଡାକ୍ତରି ପଢ଼ିବାକୁ ଗଲି । ସେଠାରେ ଭକ୍ତସଙ୍ଗେ ଓ କଥାମୃତ ପାଠରୁ ଶ୍ରୀ ରାମକୃଷ୍ଣ ଦେବଙ୍କ କଥା ଜାଣି ପାରିଲି । କାଳେ ମୁଁ ସନ୍ନ୍ୟାସୀ ହୋଇଯିବି ସେଥିଲାଗି ପିଉସୀ ମୋର ଅଗରୁ ବିବାହ କରାଇଥିଲେ । କଲିକତାର ବାଗବଜାରସ୍ଥ ଉଦ୍‌ବୋଧନ କାର୍ଯ୍ୟାଳୟରେ ଶ୍ରୀ ଶ୍ରୀ ମାଆ ଅଛନ୍ତି ଜାଣି ତାହାଙ୍କ ଚରଣ ଦର୍ଶନ କରିବା ଲାଗି ମନ ବ୍ୟାକୁଳ ହେଲା । ଅର୍ଥାଭାବ ବଶତଃ ବ୍ୟାରିଶନ ରୋଡ଼ରୁ ବାଗବଜାର ପର୍ଯ୍ୟନ୍ତ ଚାଲି ଚାଲି ଗଲି । ସେଠାରେ ଯାଇ ଦେଖିଲି ଭକ୍ତଙ୍କ ଭିଡ଼ ହୋଇଛି ଏବଂ ମାଆଙ୍କୁ ସମସ୍ତେ ଦର୍ଶନ କରୁଛନ୍ତି । ଭିଡ଼ କମିବା ପରେ ମାଆଙ୍କୁ ସେଥର ଦର୍ଶନ କରି ଅସିଲି । ତାଙ୍କ ସଙ୍ଗରେ କିଛି କଥାବାର୍ତ୍ତା ବିଶେଷ ହେଲା ନାହିଁ । ଏହିପରି କେତେ ଥର ଦର୍ଶନ କରିଛି ।

ଯେତେବେଳେ ବେଶୀ ଭିଡ଼ ଥାଏ ସେତେବେଳେ ମା ଯାଇ ଉଦ୍ବୋଧନ କାର୍ଯ୍ୟାଳୟରେ ବସନ୍ତି । ଲୋକମାନେ ଗୃହଗଲେ ମାଆଙ୍କୁ ପ୍ରଣାମ କରିବାକୁ ଯାଆନ୍ତି । ଥରେ ଅତ୍ୟନ୍ତ କ୍ଲାନ୍ତ-ଘର୍ମାକ୍ତ ହୋଇ ଉପରକୁ ଯାଇଛି, ମୋତେ ଦେଖିବା ମାତ୍ରେ ମାଆ ଗୋଟିଏ ବିଞ୍ଚଣାରେ ବିଞ୍ଚିବାକୁ ଲଗିଲେ । ଯେତେ ମନାକଲେ ସୁଦ୍ଧା ମାଆ ଶୁଣିଲେ ନାହିଁ, ବିଞ୍ଚିବାକୁ ଲାଗିଲେ ଏବଂ କହିଲେ, 'ନାଁ ବାବା, ତୁମେ ବସ ମୁଁ ବିଞ୍ଚୁଛି ।' ଆଉଥରେ ଡାକ୍ତରଙ୍କ ଗୃହଠାକୁ ସମୟରେ ଯାଇଛି, ମାଆ ପ୍ରସାଦୀ ଦୁଧଭାତ ରଖିଥିଲେ, ମୋତେ ଖାଇବାକୁ ଦେଲେ । କେବେହେଲେ ମାତୃସ୍ନେହର ଆସ୍ୱାଦ ପାଇ ନାହିଁ । ସେଦିନ କପରି ଗୋଟିଏ ଭାବାନ୍ତର ହେଲା, କହିଲି ମାଆ ! ଖାଇଣି ନାହିଁ, ଖୁଆଇ ନ ଦେଲେ ଖାଇବି ନାହିଁ । ଅଗତ୍ୟା ମାଆ ଖୁଆଇବାକୁ ବସିଲେ । ତେବେ ସୁଦ୍ଧା କହିଲି ଖାଇବି ନାହିଁ । ମୁହଁରୁ ଓଢଣା ଖୋଲି ନ ଖୁଆଇଲେ ଖାଇବି ନାହିଁ । ସେତେବେଳେ ମାଆ ମୁହଁରୁ ଓଢଣା ଖୋଲି ଖୁଆଇବାକୁ ବସି 'କେଉଁଠି ଘର, କେଉଁଠାରେ ରହ, କଅଣ କର' ଇତ୍ୟାଦି ସବୁକଥା ପଚାରିଲେ ।

ମାଆ ଭକ୍ତ ସନ୍ତାନମାନଙ୍କୁ ଏପରି ସୁଦୃଢ଼ ସ୍ନେହ-ବନ୍ଧନରେ ବାନ୍ଧିଥିଲେ ଯେ ତାହା ଲେଖନୀଦ୍ୱାରା ପ୍ରକାଶ କରି ବୁଝାଇବା କଠିନ । ପ୍ରତ୍ୟେକ ବ୍ୟକ୍ତିଙ୍କ ସହିତ ବିଭିନ୍ନ ବ୍ୟବହାର, ବିଭିନ୍ନ ପ୍ରକାର ଆଦର ଯତ୍ନ କଲେ ସୁଦ୍ଧା ପ୍ରତ୍ୟେକ ବ୍ୟକ୍ତି ମନେ କରିଥାଏ, ମୋତେ ମାଆ ବେଶୀ ଭଲ ପାଉଛନ୍ତି ଓ ମୋତେ ଅଶେଷ କୃପା କରୁଛନ୍ତି । କେବଳ ଆଶ୍ରିତ ଭକ୍ତମାନଙ୍କ ପ୍ରତି ଯେ ମାଆଙ୍କ ସ୍ନେହ ବା କରୁଣା ଥିଲା ତାହା ନୁହେଁ, ପରନ୍ତୁ ଦୁଃଖୀ, ଦରିଦ୍ର, ପୀଡ଼ିତ, ଆର୍ତ୍ତ, ସ୍ୱଦେଶୀ, ବିଦେଶୀ ସମସ୍ତଙ୍କ ପ୍ରତି ସମାନ ସ୍ନେହ, ସମାନ ପ୍ରୀତି, ସମାନ କରୁଣା ।

ସାକ୍ଷାତ୍ ଜଗଜ୍ଜନନୀ ଯାହାକୁ କହନ୍ତି ତାହାଙ୍କ ଆଚରଣ, ବ୍ୟବହାରହିଁ ବୁଝାଇ ଦେଉଥିଲା । କେଉଁ କେଉଁ ବର୍ଷରେ ଅନାବୃଷ୍ଟି ବଶତଃ ଶସ୍ୟହାନି ଯୋଗୁଁ ଦେଶରେ ଦୁର୍ଭିକ୍ଷ ପଡ଼େ । ସେଥିରେ ଲୋକ-ମାନଙ୍କ ଦୁଃଖ ଦୁର୍ଦ୍ଦଶାର କଥା ଶୁଣି ମାଆ ବ୍ୟଥିତ ହେଉଥାନ୍ତି ଏବଂ ଦୁଃଖରେ ତାହାଙ୍କ ମୁଖ ବିଷଣ୍ଣ ହେଉଥାଏ । ପ୍ରାର୍ଥନା କରି କହୁଥାନ୍ତି, 'ହେ ଭଗବାନ୍ ! ଲୋକମାନଙ୍କ ଦୁର୍ଦ୍ଦଶା ଦୂର କରି ଦିଅ । ଜଗତର କଲ୍ୟାଣ କର' ।

ଦିନେ ଅପରିଚିତା ପୁତ୍ରବିରହିଣୀ କୌଣସି ଜନନୀଙ୍କ କ୍ରନ୍ଦନ ଶୁଣି ଶ୍ରୀ ଶ୍ରୀ ମାଆ ମଧ୍ୟ ରୋଦନ କଲେ । ଏପରି ଶୋକରେ ବ୍ୟଥିତା ହୋଇଥିଲେ ଯେ କିଏ କହିବ ଏ ସେହି ସନ୍ତାନର ଜନନୀ ନୁହନ୍ତି । ଯେପରି ଗର୍ଭଧାରିଣୀ ପୁତ୍ରଶୋକରେ ଅଚ୍ଛନ୍ନ ହୋଇଥିଲେ, ସେହିପରି ଅବିକଳ ତାହାଙ୍କୁ ଦେଖାଗଲା । ଗର୍ଭଧାରିଣୀ ଜନନୀଙ୍କ ନିକଟରେ ଯେପରି ସୁପୁତ୍ର କୁପୁତ୍ର ସମାନ, ଶ୍ରୀ ଶ୍ରୀ ମାଆଙ୍କ ନିକଟରେ ତଦ୍ରୂପ ଥିଲା । କେହି ଗୁଣୀ ବା ଦୋଷୀ ବିଚାର କରିବାକୁ ତାହାଙ୍କୁ ଦେଖା ଯାଉ ନ ଥିଲା । ତାହାଙ୍କ ଚରିତ୍ରରୁ ଅଦୋଷଦର୍ଶିତାର ଭୂରି ଭୂରି ପ୍ରମାଣ ମିଳେ । ଯାହାଙ୍କୁ ସମସ୍ତେ ଉପେକ୍ଷା ବା ଅବଜ୍ଞା କରୁଥାନ୍ତି ମାଆ କିନ୍ତୁ ତାହାଙ୍କ ସପକ୍ଷରେ ଥାଆନ୍ତି ।

ଦିନେ କୋୟାଲପଡ଼ାସ୍ଥ ଜଗଦମ୍ବା ଆଶ୍ରମର ବାହାରରେ ଗୋଟିଏ ତେନ୍ତୁଳି ଗଛ ନିକଟରେ ମାଆ ଖଟ ଉପରେ ବସିଥାନ୍ତି । ସେହି ସମୟରେ ଗ୍ରାମସ୍ଥ ମେହେନ୍ତରର ରମଣୀ ଆସି କାନ୍ଦି କାନ୍ଦି କହିଲା, ମାଁଆ ! ମୋର ଉପପତି ଛାଡ଼ି ଚାଲି ଯାଇଛି । ମୋତେ ଏହି ଦୁଃଖ-ସାଗରରେ ଭସାଇ ଦେଇଛି; ମୁଁ ତାହାପାଇଁ ସବୁ ଛାଡ଼ି ଚାଲି

ଆସିଥିଲା । ମାଆ ତାହାର କରୁଣ କାହାଣୀ ଶୁଣି ସେହି ଲୋକକୁ ଡକାଇ ସ୍ନେହପୂର୍ଣ୍ଣ ଅଥଚ ମୃଦୁଭର୍ତ୍ସନା ସହକାରେ କହିଲେ, ଛି, ଛି, ଏପରି କାର୍ଯ୍ୟ କରିବା ଉଚିତ ନୁହେଁ । ଯେଉଁ ସ୍ତ୍ରୀ ତୁମ୍ଭଲାଗି ସବୁ ଛାଡ଼ି ତୁମ୍ଭଙ୍କୁ ଆଶ୍ରୟ କରିଛି, ତାହାକୁ ତ୍ୟାଗ କରିବା ଉଚିତ କି ? ଏତେକାଳ ତୁମ୍ଭେ ତାହାର ସେବା ଗ୍ରହଣ କରି ଏକ୍ଷଣି ଯଦି ତାହାକୁ ତ୍ୟାଗକରିବ ତାହାହେଲେ ତୁମ୍ଭର ମହା ଅଧର୍ମ ହେବ—ନରକରେ ସୁଦ୍ଧା ସ୍ଥାନ ପାଇବ ନାହିଁ । ମାଆଙ୍କ କଥାରେ ତାହାର ସୁବୁଦ୍ଧି ଉଦିତ ହେଲା । ସେ ସ୍ତ୍ରୀ ଲୋକଟିକୁ ଫେରାଇ ନେଲା । ଉଭୟେ ପୂର୍ବପରି ଏକତ୍ର ବସବାସକଲେ । ଏହିପରି ଅନେକ ଦୃଷ୍ଟାନ୍ତ ତାହାଙ୍କ ଜୀବନଚରିତରୁ ମିଳେ ।

ଲୋକକଲ୍ୟାଣ ସାଧନରେ ଶ୍ରୀଶ୍ରୀ ମାଆଙ୍କ ଅହୈତୁକୀ ଆନ୍ତରିକତା ଥିବାଯୋଗୁଁ ସେ ଅଧିକାଂଶ କ୍ଷେତ୍ରରେ ସୁଫଳ ଲାଭ କରୁଥିଲେ । ତାହାଙ୍କ ପ୍ରାର୍ଥନା ଫଳବତୀ ହେଉଥିଲା । ଏଠାରେ ଦୁଇଟି ଘଟଣା ଉଲ୍ଲିଖିତ ହେଲା । ଶ୍ରୀ ରାମକୃଷ୍ଣ ଦେବ ଦେହତ୍ୟାଗ କରିବାପରେ ତ୍ୟାଗୀ ଯୁବକମାନେ ଯେତେବେଳେ ଘରଦ୍ୱାର ପିତା ମାତା ସବୁ ଛାଡ଼ି ଆସିଲେ ସେତେବେଳେ ସେମାନଙ୍କ ଖାଇବା ପିଇବା ରହିବା ପାଇଁ କୌଣସି ନିର୍ଦ୍ଦିଷ୍ଟ ସ୍ଥାନ ନ ଥିଲା । ତୀବ୍ର ବୈରାଗ୍ୟ ଓ ଭଗବାନ ଲାଭ କରିବା ନିମନ୍ତେ ଘର ଘର ବୁଲି ଭିକ୍ଷା କରି ସେମାନେ ଜୀବନ ଧାରଣ କରୁଥିଲେ । ସେତେବେଳେ ସେମାନଙ୍କର କଷ୍ଟ ଦେଖି ମାଆ କାତର ଭାବରେ ଠାକୁରଙ୍କୁ ପ୍ରାର୍ଥନା କରି କହୁଥିଲେ,'ଠାକୁରେ ସେମାନଙ୍କ ପାଇଁ ମୋଟା ଭାତ ଲୁଗାର ବ୍ୟବସ୍ଥା କରିଦିଅ, ଯେପରି ସେମାନଙ୍କୁ ଗ୍ରାସାଚ୍ଛାଦନ ଲାଗି ଭାବିବାକୁ ନ ହୁଏ ।' ଏହିପରି ଠାକୁରଙ୍କଠାରେ କାନ୍ଦି କାନ୍ଦି ସେ

ପ୍ରାର୍ଥନା କରିଥିବା ଯୋଗୁଁ ବର୍ତ୍ତମାନ ଏହି ସବୁ ଆଶ୍ରମ ହେଲା ଏବଂ ଗ୍ରାସାଚ୍ଛାଦନର ଅଭାବ ରହିଲା ନାହିଁ ।

ଆଉଥରେ ଜୟରାମବାଟୀ ଅଞ୍ଚଳରେ ବର୍ଷେ ବର୍ଷା ନ ହେବାରୁ ବିଲର ଧାନ ସବୁ ଖରାରେ ଜଳି ଯିବାକୁ ଆରମ୍ଭ କଲା । ଗୃହୀମାନେ ଘୋରପ୍ରମାଦ ଗଣିଲେ । ଦରିଦ୍ର କୃଷକଙ୍କ ପିଲେ ଛୁଆ ଯେନ କିପରି ବା ବଞ୍ଚିବେ ? ଆଗରୁ ସେମାନେ ମାଆଙ୍କ କଥା ଜାଣିଥିଲେ । ସେଥିଯୋଗୁଁ ଗୃହୀମାନେ ଦଳେ ଆସି ମାଆଙ୍କ ଆଗରେ ଗୁହାରି କରି କହିଲେ, 'ମାଆ ଏ ବର୍ଷ ବର୍ଷା ନ ହେବାରୁ ଆମେ ମହା-ବିପଦରେ ପଡ଼ିଛୁଁ । ପିଲା ଛୁଆ ନ ଖାଇ ମରିଯିବେ । ସେମାନଙ୍କ ବ୍ୟାକୁଳ ଭାବ ଦେଖି ମାଆ ସେମାନଙ୍କ ସଙ୍ଗରେ ଧାନକ୍ଷେତକୁ ଯାଇ ଗୃରଅଢ଼େ ଦୃଷ୍ଟି ପକାଇ ପ୍ରାର୍ଥନା କଲେ, 'ହେ ଭଗବାନ୍, ହାୟ ! ଏ କଅଣ କଲ ! ଶେଷରେ କଅଣ ଏମାନେ ନ ଖାଇ ମରିବେ ? ଆଶ୍ଚର୍ଯ୍ୟର ବିଷୟ ସେହିଦିନ ରାତିରେ ପ୍ରବଳ ବର୍ଷା ହେଲା । ସେହିବର୍ଷ ଏତେ ଧାନ ହୋଇଥିଲା ଯେ ବହୁବର୍ଷ ମଧ୍ୟରେ ସେପରି ଦେଖା ନ ଥିଲା ।

କେବଳ ମନୁଷ୍ୟଙ୍କ କଲ୍ୟାଣ ପାଇଁ ଯେ ଶ୍ରୀ ଶ୍ରୀ ମାଆ ପ୍ରାର୍ଥନା କରୁଥିଲେ ଏବଂ ସ୍ନେହ କରୁଣା ବିତରଣ କରୁଥିଲେ ତାହା ନୁହେଁ, ପରନ୍ତୁ ପଶୁପକ୍ଷୀମାନେ ମଧ୍ୟ ତାହାଙ୍କ ସ୍ନେହରୁ ବଞ୍ଚିତ ହେଉ ନ ଥିଲେ । ମାଆଙ୍କ ଭ୍ରାତୁଷ୍ପୁତ୍ରୀ ରାଧାରାଣୀ ଗୋଟିଏ ବିରାଡ଼ି ପୋଷି ଥିଲା । ବିରାଡ଼ିଟି ଦୁଧ ଭାତ ଖାଇବାକୁ ଭଲ ପାଏ ବୋଲି ପ୍ରତିଦିନ ପାଏ ଲେଖାଏଁ ଦୁଧ ତାହାଲାଗି ବ୍ୟବସ୍ଥା ଥିଲା । ସେ ବିରାଡ଼ିଟି ମାଆଙ୍କ ଗୋଡ଼ତଳେ ଆସି ଶୋଇ ରହୁଥାଏ । କେବେ କେବେ ମାଆ ଠେଙ୍ଗାରେ ତଡ଼ିଦେଲେ ମଧ୍ୟ ସେ ଯାଉ ନ ଥାଏ । ଦିନେ

ଜନୈକ ଭକ୍ତ ବିରକ୍ତ ହୋଇ ତାହାକୁ ଧରି ଛୋରରେ ଲୁଇଁରେ ବଗୃହ ଦେବାରୁ ମାଆ ଅତ୍ୟନ୍ତ ଦୁଃଖିତ ହେଲେ ଏବଂ ତାଙ୍କୁ ବଡ଼ ଦୁଃଖ ବୋଧ ହେଲା । ମାଆ କହିଲେ—ବିରାଡ଼ି ଏ ଘର ସେ ଘର ପଶି ଚୋରି କରିଖାଏ, ଚୋରି କରି ଖାଇବା ତାହାର ସ୍ୱଭାବ । କିଏ ସେମାନଙ୍କୁ ଆଦର କରି ଖାଇବାକୁ ଦିଏ ? ସେମାନଙ୍କର ଧର୍ମ ସେଇଆ ।'

ଅନ୍ୟଥରେ ଉଦ୍ବୋଧନ କାର୍ଯ୍ୟାଳୟରେ (ମାଆଙ୍କ ବାସଗୃହ) ଜଣେ ବ୍ରହ୍ମଚାରୀଙ୍କ ବିଛଣାରେ ଏକ ବିରାଡ଼ି ଛୁଆ ପ୍ରସବ କରିଥିଲା । ଯେପରି ବ୍ରହ୍ମଚାରୀ ଦେଖିବାକୁ ନ ପାଏ ତରତରରେ ମାଆ ସେ ଗୁଡ଼ିକ ଘୁଞ୍ଚାଇ ଦେଇ ବିଛଣା ଗୁଡ଼ାକ ସାବୁନ ଜଳରେ ଧୋଇ ପରିଷ୍କାର କରି ଦେଲେ । ତଥାପି ସେ ଆସି ଜାଣି ପାରିଲେ କାଳେ ବିରକ୍ତ ହେବ ଏବଂ ବିରାଡ଼ି ଗୁଡ଼ିକୁ ବାହାର କରିଦେବ ଏହା ଭାବି ସେ ଆସିବାମାତ୍ରେ ମାଆ ତାଙ୍କୁ କହିଲେ, 'ବାବା ! ବିରାଡ଼ିଗୁଡ଼ିକ ଏଠାରେ ରହନ୍ତି, ଏଠାରେହିଁ ଖାଆନ୍ତି, ପ୍ରସବ କରିବାକୁ ଆଉ କେଉଁଠିକି ଯିବେ । ବାବା, ସେଗୁଡ଼ାଙ୍କୁ କିଛି କୁହନାହିଁ ।'

ଜଣେ ମାଆଙ୍କୁ ପଚାରିଥିଲା, 'ମାଆ ! ତୁମ୍ଭେ କଅଣ ସମସ୍ତଙ୍କ ମାଆ ?' ମାଆ, କହିଲେ 'ହଁ ସମସ୍ତଙ୍କର ମାଆ ।' 'ଇତର ଜୀବ ଜନ୍ତୁର ମାଆ ?' 'ହଁ ସେମାନଙ୍କର ମଧ୍ୟ ।'

## ତପୋଭାବ

ଜୟରାମବାଟୀ ଭୀଷଣ ମ୍ୟାଲେରିଆଗ୍ରସ୍ତ ଅଞ୍ଚଳ । ସେଠାରେ ମ୍ୟାଲେରିଆ ମୁହଁରୁ ଅଳ୍ପ ଲୋକହିଁ ରକ୍ଷା ପାଇଥାନ୍ତି । ଅଧିକାଂଶ

ଲୋକ ସେଥିରେ ରୋଗଗ୍ରସ୍ତ ହୋଇ ମୃତ୍ୟୁ ମୁଖରେ ପତିତ ହୁଅନ୍ତି । ବେଳେ ବେଳେ ଜାର୍ଯ୍ୟୋପଲକ୍ଷରେ ପିତ୍ରାଳୟ ଜୟରାମବାଟୀକୁ ଯାଇ ଶ୍ରୀ ଶ୍ରୀ ମାଆ ମ୍ୟାଲେରିଅରେ ଆକ୍ରାନ୍ତ ହେଉଥିଲେ । ଏଥର କିନ୍ତୁ ସେଠାରେ ଦୀର୍ଘକାଳ ରହିବାରୁ ତାହାଙ୍କୁ ପ୍ରବଳ ଭାବରେ ଜ୍ୱର ଆକ୍ରମଣ କଲା । ପୂର୍ବରୁ କଠୋର ତ୍ୟାଗ ଯୋଗୁଁ ମାଆଙ୍କ ଦେହ ଭଗ୍ନ ହୋଇଥିଲା । କେବଳ ତ୍ୟାଗୀ ଓ ଭକ୍ତ ସନ୍ତାନମାନଙ୍କ ଅପ୍ରାଣ ଚେଷ୍ଟା ଫଳରେ ଏତେକାଳ ସେ ବଞ୍ଚି ରହିଥିଲେ । ମାଆଙ୍କ ଦେହରକ୍ଷାର ଭାର ସ୍ୱାମୀ ସାରଦାନନ୍ଦ ମହାରାଜ ନେଇଛନ୍ତି ନେଇ-ଥିଲେ । ସ୍ୱାମୀ ସାରଦାନନ୍ଦ ସନ୍ନ୍ୟାସୀ, ରାମକୃଷ୍ଣ ମିଶନର ସାଧାରଣ ସମ୍ପାଦକ, ଜନ ସମାଜରେ ତାଙ୍କର ପ୍ରଭାବ ପ୍ରତିପତ୍ତିର ଅଭାବ ନ ଥିଲା । ଇଚ୍ଛାକଲେ ସେ ଅନାୟାସରେ ନିର୍ଦ୍ୱନ୍ଦରେ ଜୀବନ ଯାପନ କରି ପାରିଥାନ୍ତେ । କିନ୍ତୁ ମାଆଙ୍କ ଦେହ ରକ୍ଷା ହେଲେ ଜଗତର ଅଶେଷ କଲ୍ୟାଣ ହେବ ଭାବି ନନ୍ଦୀ ଭୃଙ୍ଗୀଙ୍କ ପରି ସାରା ଜୀବନ ମାଆଙ୍କ ଦ୍ୱାରରେ ଦ୍ୱାରୀ ହୋଇଥିଲେ । ମାଆଙ୍କ ଦେହରକ୍ଷା କରିବାରେ ଯେପରି କୌଣସି ପ୍ରକାର ତ୍ରୁଟି ନ ହୁଏ ସେଥିପ୍ରତି ତାହାଙ୍କର ତୀକ୍ଷ୍ଣ ଦୃଷ୍ଟି ଥିଲା । ନିଜର କୌଣସି ପ୍ରକାର ସୁଖ ସ୍ୱାଚ୍ଛନ୍ଦ୍ୟ ପ୍ରତି ଦୃଷ୍ଟି ନ ଦେଇ ମାଆଙ୍କ ସେବାରେ ସେ ଆତ୍ମ-ନିୟୋଗ କରିଥିଲେ ।

ସନ ୧୩୨୬ ଇଂରାଜୀ ୧୯୧୯, ମାର୍ଗଶିର ମାସରୁ ଶ୍ରୀ ଶ୍ରୀ ମାଆଙ୍କ ଦେହ ଅସୁସ୍ଥ ହେଲା । ପ୍ରଥମେ ଅଳ୍ପ ଅଳ୍ପ ଜ୍ୱର ଦେଖାଗଲା । କିନ୍ତୁ ବେଳେ ବେଳେ ଜ୍ୱରର ବିରାମ ହେଲେ ସୁଦ୍ଧା ଏକାବେଳକେ ଜ୍ୱର ଛାଡ଼ିଗଲା ନାହିଁ । ଦୀର୍ଘ ଦିନ ଜ୍ୱରରେ ଭୋଗି ଭୋଗି ଦେହ ଅବସନ୍ନ ଓ କ୍ଷୀଣ ହେଲା । ସେତେବେଳେ ମାଆ ଜୟରାମବାଟୀରେ ଥିଲେ । ସ୍ୱାମୀ ସାରଦାନନ୍ଦ ମହାରାଜ ମାଆଙ୍କ ଅସୁସ୍ଥତା କଥା ଜାଣି

କଲିକତାରୁ ଅବିଳମ୍ବେ ଜୟରାମବାଟୀ ଯାତ୍ରା କଲେ । ବାଗ୍-
ବଜାରସ୍ଥ ଉଦ୍ବୋଧନ ଗୃହକୁ ଆସିବା ପାଇଁ ତାହାଙ୍କଠାରେ କାତର
ନିବେଦନ କଲେ । ଆସିବାର ସବୁ ବ୍ୟବସ୍ଥା ହେଲା । ମାଆଙ୍କୁ
ଆଣାଇ ଉଦ୍ବୋଧନ କାର୍ଯ୍ୟାଳୟରେ ରଖି ଯେତେ ପ୍ରକାର ଚିକିତ୍ସା
ହୋଇପାରେ ସେ ତାହା କରାଇଲେ । ହୋମିଓପାଥି, କବିରାଜ,
ଏଲୋପ୍ୟାଥି ଇତ୍ୟାଦି ସକଳ ପ୍ରକାର ଚିକିତ୍ସା କରାଗଲା । ବଡ଼ ବଡ଼
ଡାକ୍ତର କବିରାଜମାନେ ଦେଖିଲେ । କିନ୍ତୁ କିଛି ସୁଫଳ ଦେଖାଗଲା
ନାହିଁ । ଚୈତ୍ର ମାସ ମଧ୍ୟ ଭାଗରେ କବିରାଜ ଶ୍ୟାମାଦାସ ବାଚସ୍ପତିଙ୍କ
ଚିକିତ୍ସାରେ ସାମାନ୍ୟ ଜ୍ୱର କମିଲା । ଅବଶେଷରେ ଡାକ୍ତର
ପ୍ରାଣଧନ ବସୁ କାଲାଜ୍ୱର ହୋଇଅଛି ବୋଲି ମତ ପ୍ରକାଶ କଲେ ।
ବୈଶାଖ ମାସଠାରୁ ଆରୋଗ୍ୟ କାମନା କରି ଶାନ୍ତି ସ୍ୱସ୍ତ୍ୟୟନ ଆରମ୍ଭ
କରାଗଲା । ସଙ୍ଗେ ସଙ୍ଗେ ଚିକିତ୍ସା ଚାଲିଲା । ସକଳ ପ୍ରଚେଷ୍ଟା ବିଫଳ
ହେଲା । କାଳର କୁଟିଳ ଗତିକୁ କିଏ ପ୍ରତିରୋଧ କରିବ ?
ଖ୍ରୀଃ ୧୯୨୦ ଶ୍ରାବଣ ମାସ ୪ଠାରିଖ ମଙ୍ଗଳବାର ରାତ୍ର ଘ ୧-୩୦ ମିନିଟ
ସମୟରେ ଶ୍ରୀ ଶ୍ରୀ ମାଆ ମାନବଲୀଳା ସମ୍ବରଣ କଲେ । ସେହି ରାତିରୁ
ସକାଳ ପର୍ଯ୍ୟନ୍ତ ଆୟୋଜନ ଚାଲିଲା । ମାଆଙ୍କ ତିରୋଭାବ କଥା ଶୁଣି
ଭକ୍ତ ଓ ସାଧୁମାନେ ରୁଣ୍ଡ ହେଲେ । ବିବିଧ ପୁଷ୍ପମାଲ୍ୟସୁସଜ୍ଜିତ
ହୋଇ ତାହାଙ୍କ ସ୍ଥୁଳ ଦେହ ଶୋଭାଯାତ୍ରା ସହକାରେ ବେଲୁଡ଼
ମଠକୁ ଆନୀତ ହୋଇ ଗଙ୍ଗା ତୀରରେ ଦାହ କରାଗଲା । ଯେଉଁ
ବେଲୁଡ ମଠ ହତା ନିକଟ ଗଙ୍ଗା ତୀରରେ ଦାହ କରାଯାଇଥିଲା
ସେଠାରେ ବର୍ତ୍ତମାନ ନବଚୂଡ଼ାମଣ୍ଡିତ ମନ୍ଦିର ବିଦ୍ୟମାନ ।

ସେ ନଶ୍ୱର ଦେହ ତ୍ୟାଗ କଲେ ସୁଦ୍ଧା ତାହାଙ୍କର ଯେଉଁ
ମହିମାପୂର୍ଣ୍ଣ ତ୍ୟାଗ, ସେବା, ସାଧନା, ପାତିବ୍ରତ୍ୟ ଓ ସହନଶୀଳତା
ଓ ସ୍ନେହପରାୟଣତା ତାହା ନଷ୍ଟ ହେବାର ନୁହେଁ । ଭାରତୀୟ

ରମଣୀଙ୍କ ମଧ୍ୟରେ ଏହା ଏକ ଉଜ୍ଜ୍ୱଳ ଗୌରବମୟ ସୂଚନା । ଏହି ଭାରତ ବର୍ଷ ଶତ ଶତ ପୂତଚରିତା ସାଧ୍ୱୀଙ୍କ ମହିମାରେ ଉଦ୍ଦୀପ୍ତ ଓ ପବିତ୍ର । ଯେତେ ଯେତେ ସାଧ୍ୱୀ ଯେ ପରମ ସତ୍ୟର ଆରାଧନା ଓ ସାଧନା କରି ପରମପଦ ପ୍ରାପ୍ତ ହୋଇଛନ୍ତି, ତାହାର କଳନା ନାହିଁ । ବୈଦିକ ଯୁଗରେ ଗାର୍ଗୀ, ମୈତ୍ରେୟୀ, ଲୋପାମୁଦ୍ରା, ଘୋଷା, ବାକ୍, ବିଶ୍ୱବାରା ପ୍ରମୁଖ ମହୀୟସୀ ମହିଳା ବ୍ରହ୍ମବାଦିନୀ ବୋଲି ଖ୍ୟାତ ଏବଂ ସେମାନଙ୍କ ପୁଣ୍ୟ ପ୍ରଭାବରେ ବେଦ ଅଲଙ୍କୃତ । ପୌରାଣିକ ଯୁଗରେ ସୀତା, ସାବିତ୍ରୀ, ଉମା, ଦମୟନ୍ତୀ, ଅନସୂୟା ପ୍ରଭୃତିଙ୍କ ଯେଉଁ ସତୀତ୍ୱ, ଧୈର୍ଯ୍ୟ, ସାଧନା ଓ ତପସ୍ୟାର ଅତୁଳନୀୟ ଚିତ୍ର ଅଙ୍କିତ ତାହା ଜଗତର ଆଦର୍ଶ ସ୍ଥାନୀୟ କହିଲେ ଅତ୍ୟୁକ୍ତି ହେବ ନାହିଁ । ପୁଣି ବ୍ରଜ ଗୋପୀମାନଙ୍କ ଇଷ୍ଟ ଦର୍ଶନ ନିମନ୍ତେ ଯେଉଁ ତୀବ୍ର ବ୍ୟାକୁଳତା ଓ ତୀବ୍ର ଅନୁରାଗ ତାହା ସାଧନା-ଜଗତରେ ଏକ ନୂତନ ଆଲୋକ ପ୍ରଦାନ କରିଛି । ମହା ପ୍ରଜାବତୀ, ଶାକ୍ୟ ସୁନ୍ଦରୀ, ଗୋପା, କ୍ଷେମା, ବିଶାଖା ପ୍ରଭୃତି ବୌଦ୍ଧ ଇତିହାସରେ ଅମର ହୋଇ ରହିଛନ୍ତି । ତାହାଛଡ଼ା ଆଧୁନିକ ଯୁଗର ନଦୀୟାବାସିନୀ ପତିବିରହିଣୀ ବିଷ୍ଣୁପ୍ରିୟାଙ୍କ ସାଧନାର କଥା କିଏ ନ ଜାଣେ ?

ପ୍ରାଚୀନ କାଳର ମହୀୟସୀ ମହିଳାଙ୍କ ଗୌରବ ପୁନରୁଜ୍ଜୀବିତ କରିବା ନିମନ୍ତେ କଅଣ ସାର୍ଦ୍ଧ ଊନବିଂଶ ଶତାବ୍ଦୀରେ ଶ୍ରୀ ରାମକୃଷ୍ଣ ଦେବଙ୍କ ସହଧର୍ମିଣୀ ହୋଇ ଶ୍ରୀ ସାରଦା ଦେବୀଙ୍କ ଆଗମନ ? ସେଥି ସକାଶେ କଅଣ ସେ ଭାରତୀୟ ସଂସ୍କୃତି, ତ୍ୟାଗ, ସାଧନା ଓ ଆଧ୍ୟାତ୍ମିକତାର ମୂର୍ତ୍ତିରୂପା ? ସେଥି ସକାଶେ କଅଣ ସେ ଇହଲୋକରେ ୬୬ ବର୍ଷ ଜୀବନ ଯାପନ କରି ସମସ୍ତଙ୍କ ପ୍ରତି ସ୍ନେହକରୁଣା ବିତରଣଶୀଳା ?

---

# ଶ୍ରୀ ଶ୍ରୀ ମାଆଙ୍କ ଉପଦେଶ

"ମୁଁ କି ଉପଦେଶ ଦେବି ? ଠାକୁରଙ୍କ କଥା ସବୁ ବହିରେ ବାହାରି ଯାଇଛି । ତାହାଙ୍କର ଗୋଟିଏ କଥାକୁ ଧରି ଜୀବନରେ ପାଳନ କଲେ ସବୁ ହୋଇଯାଏ । ଉପଦେଶ ପାଳନ କରିବାକୁ ସେପରି ଅଧିକାରୀ କାହିଁ ? ଅଧିକାରୀ ନ ହେଲେ ନ ହୁଏ ।"

## ଅନନ୍ୟତା

"ଏହି ଜଗତରେ କଣ ଅନନ୍ୟତା ଅଛି ? କେଉଁ କାମଟା ଭଲ କୁହନା ? ସେଥିଲାଗି ଠାକୁରେ ସଜନା ଛୁଇଁ,ଶାଗ ଛଡ଼ା ଅନ୍ୟ କିଛି ଖାଇଲେ ନାହିଁ । ସନ୍ଦେଶ ଯାଚିଲେ କହନ୍ତି, 'ସେଥିରେ କଅଣ ଅଛି ? ସନ୍ଦେଶ ଯାହା, ମାଟି ମଧ୍ୟ ତାହା' ।"

"ତାହାଙ୍କଠାରେ ଖୁବ ବିଶ୍ୱାସ ରଖିବ । ପିଲାଛୁଆ ମାନଙ୍କର ଯେପରି ଅଶ୍ରୟ ସ୍ଥଳ ମା ବାପ, ଠାକୁରଙ୍କୁ ସେହିରୂପେ ଜ୍ଞାନ କରିବ ।"

"ଠାକୁରେ ମୋତେ କହୁଥିଲେ, 'ଦେଖୁଛ ତ ମଣିଷର ଦେହଟା କଅଣ ? ହେଇ ଅଛି ତ, ହେଇ ନାହିଁ । ପୁଣି ସଂସାରକୁ ଆସି କେତେ ଦୁଃଖ, କେତେ ଜ୍ୱଳା ଯନ୍ତ୍ରଣା । ଏକ ଭଗବାନହିଁ ନିତ୍ୟ, ସତ୍ୟ । ତାହାଙ୍କୁ ଡାକି ପାରିଲେ ମଙ୍ଗଳ । ଦେହ ଧାରଣ କଲେ ନାନା ଉପସର୍ଗ ।"

"ଯେତେବେଳେ ବଡ଼ ମହାପୁରୁଷ ହୁଅନ୍ତୁ ପଛକେ ଦେହ ଧାରଣ କଲେ ଦେହର ଭୋଗ ସବୁ କରିବାକୁ ପଡ଼େ । ତେବେ ଏତିକି ମାତ୍ର ପ୍ରଭେଦ ଯେ ସାଧାରଣ ଲୋକଙ୍କର ମନ କାନ୍ଦି କାନ୍ଦି ଯାଏ, ସେମାନଙ୍କର ମନ ହସି ହସି ଯାଏ । ମୃତ୍ୟୁଟା ସତେ କି ଖେଳ !"

"ବହୁ ସୌଭାଗ୍ୟରୁ ଏହି ମନୁଷ୍ୟ ଜନ୍ମ । ଖୁବ ମନପ୍ରାଣ ଲଗାଇ ଭଗବାନଙ୍କୁ ଡାକି ଯାଅ । ଖଟିବାକୁ ହେବ, ନ ଖଟିଲେ କିପରି ହେବ ? ସଂସାରର କାର୍ଯ୍ୟକର୍ମ ମଧ୍ୟରେ ମୁଦ୍ଧା ଗୋଟିଏ ସମୟ କରିନେବାକୁ ହେବ । ମୋ କଥା କଣ କହିବ ? ଦକ୍ଷିଣେଶ୍ୱରରେ ଥିବାବେଳେ ରାତି ତିନଟାରୁ ଉଠି ଜପରେ ବସୁଥିଲି । କୌଣସି ଚେତନା ରହୁନଥିଲା । ଜଣେ ସତରେ ଜହ୍ନକୁ ଅନାଇ ଯୋଡ଼ ହାତରେ କହୁଥିଲି, ତୁମ୍ଭ ଜ୍ୟୋତି ପରି ମୋର ଅନ୍ତରକୁ ନିର୍ମଳ କରିଦିଅ । ଜପ ଧ୍ୟାନ କରୁ କରୁ ଦେଖିବାକୁ ପାଇବ ( ଠାକୁରଙ୍କୁ ଦେଖାଇ ) ସେ କଥା କହୁଛନ୍ତି । ମନରେ ଯେଉଁ ବାସନାଟି ହେବ ତାହା ସେ ପୂର୍ଣ୍ଣ କରିଦେବେ—ପ୍ରାଣରେ ଅପାର ଶାନ୍ତି ପାଇବ । ସାଧନ କରୁ କରୁ ପୁଣି ଦେଖିବ ମୋ ମଧ୍ୟରେ ଯେ, ତୁମ୍ଭ ମଧ୍ୟରେ ସେହି; ହାଡ଼ି, ଡମ, ପାଣ, କଣ୍ଡ୍ରା ମଧ୍ୟରେ ମୁଦ୍ଧା ସେହି—ତେବେ ଯାଇ ମନରେ ଦୀନ ଭାବ ଆସିବ ।"

"ଯେତେବେଳଯାଏ 'ମୁଁ' ରହିଛି ତେତେବେଳଯାଏ ବାସନା ରହିବ । ସେ ସବୁ ବାସନା ରହିଲେ ମଧ୍ୟ ତୁମ୍ଭମାନଙ୍କର କିଛି କ୍ଷତି ହେବ ନାହିଁ । 'ସେ' ରକ୍ଷା କରିବେ । ଯେ ତାଙ୍କର ଶରଣାଗତ, ସବୁ ଛାଡ଼ି ଯେ ତାଙ୍କୁ ଆଶ୍ରୟ କରିଛି, ଯେ ଭଲ ହେବାକୁ ଚାହେଁ, ତାକୁ ସେ ନିଶ୍ଚୟ ରକ୍ଷା କରିବେ ।"

"ଦେହ କୁହ, ପୁଅ କୁହ, ପତି କୁହ ସବୁ ମାୟା । ଏ ସବୁ ମାୟାର ବନ୍ଧନ । ଏହାକୁ କାଟି ନ ପାରିଲେ ଉଦ୍ଧାର କିପରି ହେବ ? ଦେହାତ୍ମବୁଦ୍ଧି ନ ତୁଟିଲେ ଆଗେଇବ କିପରି ? ବଳୁଚି କର ଦେହଟା କଅଣ ? ଏଥିରେ ଦେଢସେର ମାଉଁସ ଛଡ଼ା ଅଉ କିଛି ଅଛି କି ? ତାହା ହେଲେ ଏହା ଲାଗି ଏତେ ଗର୍ବ କାହିଁକି ? ଯେତେ ବଡ଼ ଦେହ ହେଉ ପଛକେ ପୋଡ଼ି ପକାଇଲେ ଦେଢ ସେର ପାଉଁଶ । ତାର ପୁଣି ଏତେ ଯତ୍ନ,ତା ପ୍ରତି ଏତେ ମମତା !"

## କର୍ମ

"ମନଟାକୁ ଅଳସୁଆ ନ ରଖି କର୍ମ କରିବା ଭଲ । ମନ ଖୋଲା ରହିଲେ କେତେ ପ୍ରକାର ଅଡୁଆ ପଡ଼ିଯାଏ । ନରେନ୍ଦ୍ର ସେଥିପାଇଁ ମୋର ନିଷ୍କାମ କର୍ମର ଯତ୍ନ କଲା ।"

"କର୍ମ କରିବା ଏକାନ୍ତ ଆବଶ୍ୟକ । କର୍ମରେ ମନ ଭଲ ରହେ । ତେବେ କର୍ମ ସଙ୍ଗରେ ଜପ, ଧ୍ୟାନ, ପ୍ରାର୍ଥନା ବିଶେଷ ପ୍ରୟୋଜନ । ସଞ୍ଜ ସକାଳେ ଅନ୍ତତଃ ଥରେ ବସିବାକୁ ହୁଏ । ସେଇଟା ଯେପରି ଡଙ୍ଗାର ମଙ୍ଗ ସ୍ୱରୂପ ।

"ମନ୍ଦ କାର୍ଯ୍ୟରେ ମନ ସବୁବେଳେ ଧାଉଁଛି । ଭଲ କାମ କରିବାକୁ ମନ ମୋଟେ ଚାହେଁ ନାହିଁ । ସେଥିପାଇଁ ସତ୍ କାର୍ଯ୍ୟ

କରିବାକୁ ହେଲେ ଅନ୍ତରର ଯତ୍ନ ଓ ଦୃଢ଼ତା ଆବଶ୍ୟକ । ଯେତେବେଳେ ଦକ୍ଷିଣେଶ୍ବର ନହବତରେ ଥିଲି ଜହ୍ନ ରାତିରେ ଗଙ୍ଗା ମଧ୍ୟସ୍ଥ ସ୍ଥିର ଚନ୍ଦ୍ରକୁ ଦେଖି ଭଗବାନଙ୍କ ନିକଟରେ କାନ୍ଦି କାନ୍ଦି ପ୍ରାର୍ଥନା କରୁଥିଲି – 'ଚନ୍ଦ୍ରରେ କଳଙ୍କ ଅଛି, ମୋ ମନରେ ଯେପରି କୌଣସି ଦାଗ ନ ରହେ' ।"

"କର୍ମ କରୁ କରୁ କର୍ମର ବନ୍ଧନ ତୁଟେ, ତେବେ ନିଷ୍କାମ ଭାବ ଆସେ । କର୍ମ ଛଡ଼ା ଦଣ୍ଡେ ମାତ୍ର ବସି ରହିବା ଉଚିତ ନୁହେଁ । ଠାକୁରେ କହୁଥିଲେ 'ସ୍ତ୍ରୀ ଲୋକଙ୍କର ବସି ରହିବା ଭଲ ନୁହେଁ ।' ବସି ରହିଲେ ନାନା ପ୍ରକାର ବାଜେ ଚିନ୍ତା – କୁଚିନ୍ତା ଆସେ । ଥରେ କେରବ ଖୋଟ ଆଣି ମୋତେ ଦେଇ କହିଲେ, 'ଏଥିରେ ଶିକା ଗୁନ୍ଥିଦିଅ, ସଂଦେଶ ରଖିବି, ଲୁଚି ରଖିବି, ପିଲାମାନଙ୍କ ପାଇଁ ।' ସେଥିରେ ଶିକା ଗୁନ୍ଥିଦେଲି, ତହିଁରୁ ବାହାରିଥିବା ଅଳିଆ ଗୁଣ୍ଡକ ନେଇ ମୁଣ୍ଡ କରି ମଥାରେ ଦେଲି ।"

## କର୍ମଫଳ ଭୋଗ

"କର୍ମଫଳ ଭୋଗ କରିବାକୁହିଁ ହେବ । ତେବେ ଈଶ୍ବରଙ୍କ ନାମ ନେଲେ କେତେକ କର୍ମଫଳର ଖଣ୍ଡନ ହୋଇଯାଏ ଯେଉଁଠାରେ ଫାଳ ଫୁଟିବା କଥା ସେଠାରେ ଛୁଞ୍ଚିଟା ଫୁଟେ । ଯେପରି ସୁରଥ ରାଜା ଲକ୍ଷେ ବଳି ଦେଇ ଦେବୀଙ୍କ ଆରାଧନା କରିଥିଲେ । ସେହି ଲକ୍ଷେ ଛେଳି ପୁଣି ରାଜାଙ୍କୁ ଗୋଟିଏ ଥରରେ ଖଣ୍ଡାରେ କାଟିଲେ । ଅଉ ତାକୁ ଲକ୍ଷେ ଥର ଜନ୍ମ ନେବାକୁ ହେଲା ନାହିଁ । ଦେବୀଙ୍କ ଆରାଧନା କରିଥିଲା ପରା । ଭଗବାନଙ୍କ ନାମ ଓ ଜପ ତପ କଲେ କର୍ମ ଫଳ ଅନେକ ପରିମାଣରେ ଖଣ୍ଡନ ହୁଏ ।"

"ପ୍ରାରବ୍ଧ କର୍ମର ଫଳ ମଧ୍ୟ ଭୋଗିବାକୁ ପଡ଼େ । ତେବେ ଭଗବାନଙ୍କ ନାମ କଲେ—ଯେଉଁଠାରେ ଗୋଡ଼ କଟିଯିବାର କଥା ଥିଲା ସେଠାରେ ଗୋଟିଏ କଣ୍ଟା ଫୁଟି ତାହା ଭୋଗ ହୋଇଯାଏ ।"

"ଦେଖ ମାଆ, ସମସ୍ତେ କହନ୍ତି, ଏ ଦୁଃଖ, ସେ ଦୁଃଖ— ଭଗବାନଙ୍କୁ ଏତେ ଡାକିଲି ତେବେ ସୁଦ୍ଧା ଦୁଃଖ ନ ଗଲା । କିନ୍ତୁ ଦୁଃଖ ହିଁ ଭଗବାନଙ୍କ ଦୟାର ଦାନ । ସଂସାରରେ ଦୁଃଖ କିଏ ନ ପାଇଛନ୍ତି କହିଲ ଭଲା ? ବୃନ୍ଦା କୃଷ୍ଣଙ୍କୁ କହିଥିଲା, କିଏ କହେ ତୁମ୍ଭଙ୍କୁ ଦୟାମୟ ? ରାମ ଅବତାରରେ ସୀତାଙ୍କୁ କନ୍ଦାଇଛ । କୃଷ୍ଣ ଅବତାରରେ ରାଧାଙ୍କୁ କନ୍ଦାଇଛ । ତୁମ୍ଭର ପିତାମାତା କଂସ କାରାଗାରରେ ଦିନରାତି ଦୁଃଖ କଷ୍ଟରେ 'କୃଷ୍ଣ' 'କୃଷ୍ଣ' ଜପିଛନ୍ତି । ତେବେ ତୁମ୍ଭଙ୍କୁ କିଏ କାହିଁକି ଡାକିବ ? ଏତିକି ଯେ ତୁମ୍ଭ ନାମରେ ଯମନର ଭୟର ରହେନା ।"

"ପାପ ପୁଣ୍ୟ ପ୍ରସଙ୍ଗ ଯେଉଁଠାରେ, ସେଠାରେ ଯେତେ ଲୋକ ଥାଆନ୍ତି ସମସ୍ତଙ୍କୁ ସେହି ଭଲ ମନ୍ଦର କିଛି ନା କିଛି ଭାଗ ନେବାକୁ ପଡ଼େ ।"

## ମନ୍ତ୍ରଶକ୍ତି

"ଜୀବନର ଉଦ୍ଦେଶ୍ୟ ଭଗବାନଙ୍କୁ ଲାଭ କରିବା ଓ ତାହାଙ୍କ ପାଦ ପଦ୍ମରେ ମଗ୍ନ ହେବା । ତୁମ୍ଭେମାନେ ଭକ୍ତ (ସନ୍ୟାସୀ); ତାହାଙ୍କ ଅପଣାର ଲୋକ । ତୁମ୍ଭମାନଙ୍କ ଇହକାଳ ପରକାଳ ସେ ଦେଖୁଛନ୍ତି । ତୁମ୍ଭମାନଙ୍କର ଭାବନା କଅଣ ? ସବୁବେଳେ କଅଣ ଭଗବାନଙ୍କ ଚିନ୍ତା କରି ହୁଏ ? ଯେତେବେଳେ ବୁଲିବ ଯେତେବେଳେ ବା ତାହାଙ୍କ ଚିନ୍ତା କରିବ !

"ମନ୍ତ୍ର ଦ୍ୱାରା ଦେହ ଶୁଦ୍ଧ ହୁଏ । ଭଗବାନଙ୍କ ମନ୍ତ୍ର ଜପ କଲେ ମଣିଷ ପବିତ୍ର ହୁଏ । ଥରେ ନାରଦ ବୈକୁଣ୍ଠରେ ବସି ଭଗବାନଙ୍କ ସଙ୍ଗରେ ଅନେକ କଥାବାର୍ତ୍ତା ହେଉଥିଲେ; ସେତେବେଳେ ନାରଦ ମନ୍ତ୍ର ନେଇ ନଥିଲେ । କଥାବାର୍ତ୍ତା ପରେ ନାରଦ ଚାଲିଯିବା ଉତ୍ତାରୁ ନାରାୟଣ ଲକ୍ଷ୍ମୀଙ୍କୁ କହିଲେ, ଏଠାରେ ଗୋବର ଜଳ ଛିଞ୍ଚି ଦିଅ । ଲକ୍ଷ୍ମୀ କହିଲେ, ନାରଦ ଯେ ଆପଣଙ୍କର ପରମ ଭକ୍ତ; ତେବେ ତାହାଙ୍କ ଏପରି କହୁଛ ? ନାରାୟଣ କହିଲେ, ମନ୍ତ୍ର ନ ନେଲେ ଦେହ ଶୁଦ୍ଧ ହୁଏ ନାହିଁ, ନାରଦ ମନ୍ତ୍ର ନେଇ ନାହାନ୍ତି । ଅନ୍ତତଃ ଦେହ ଶୁଦ୍ଧି ପାଇଁ ତାଙ୍କ ମନ୍ତ୍ର ନେବା ଆବଶ୍ୟକ । ବୈଷ୍ଣବମାନେ ମନ୍ତ୍ର ଦେଇ କହନ୍ତି, ଏହିକ୍ଷଣି ମନ ତୋର । "ମଣିଷ ଗୁରୁ ମନ୍ତ୍ର ଦିଅନ୍ତି କର୍ଣ୍ଣରେ, ଜଗଦ୍ ଗୁରୁ ମନ୍ତ୍ର ଦିଅନ୍ତି ପ୍ରାଣରେ;" ମନ ହେଉଛି ସବୁ । ମନ ଶୁଦ୍ଧ ନ ହେଲେ କିଛି ହୁଏ ନାହିଁ । 'ଗୁରୁ, କୃଷ୍ଣ, ବୈଷ୍ଣବ, ଏ ତିନିଙ୍କ ଦୟା ହେଲା । ଜଣଙ୍କର ଦୟା ବିନା ଜୀବ ଛାରଖାର ହେଲା ।' ଏଠାରେ 'ଜଣଙ୍କ'ର ଅର୍ଥ ମନ । ନିଜ ମନର କୃପା ହେବା ଦରକାର ।

"ମନ୍ତ୍ର ମାଧ୍ୟମରେ ଶକ୍ତି ଆସେ । ଗୁରୁଙ୍କ ଶକ୍ତି ଶିଷ୍ୟ ଉପରକୁ ଓ ଶିଷ୍ୟଙ୍କ ଶକ୍ତି ଗୁରୁଙ୍କ ଉପରକୁ ଆସେ । ସେଥିଲାଗି ମନ୍ତ୍ର ଦେଲେ ଶିଷ୍ୟର ପାପ ଗୁରୁଙ୍କ ଉପରକୁ ଆସେ, ଦେହରେ ଏତେ ବ୍ୟାଧି ହୁଏ । ଗୁରୁ ହେବା ବଡ଼ କଠିନ—ଶିଷ୍ୟଙ୍କ ପାପ ନେବାକୁ ପଡ଼େ । ଶିଷ୍ୟ ପାପ କଲେ ଗୁରୁଙ୍କୁ ଲାଗେ । ଭଲ ଶିଷ୍ୟ ହେଲେ ଗୁରୁଙ୍କର ମଧ୍ୟ ଉପକାର ହୁଏ । କାହାର ହଠାତ୍ କାହାରବା କ୍ରମଶଃ ଉନ୍ନତି ହୁଏ । ଯାହାର ଯେପରି ସଂସ୍କାର । ରାଖାଲ (ସ୍ୱାମୀ ବ୍ରହ୍ମାନନ୍ଦ) ସେଥିପାଇଁ ମନ୍ତ୍ର ଦେବାକୁ ଚାହେଁ ନା । କହେ, "ମାଅ, ମନ୍ତ୍ର ଦେଲେ ସଙ୍ଗେ ସଙ୍ଗେ

ଦେହ ଅସୁସ୍ଥ ହୁଏ । ମନ୍ତ୍ର କଥା କେହି କହିଲେ ମୋତେ ଜ୍ୱର ଆସେ ।"

"ଅନ୍ୟାନ୍ୟ ବିଷୟ ଶିକ୍ଷା ଲାଗି ତୁମ୍ଭେ ଭିନ୍ନ ଗୁରୁ କରିପାର, କିନ୍ତୁ ଦୀକ୍ଷା ଗୁରୁ ଏକ ଛଡ଼ା ଅଧିକ କରିବା ଉଚିତ ନୁହେଁ ।

"ଦେଖ, ମାଅ, ମୁଁ ବାଳବିଧବାଙ୍କୁ ମନ୍ତ୍ର ଦିଏ ନାହିଁ, ତେବେ ତୁମ୍ଭେ ଭଲ; ସେଥିପାଇଁ ଦେଲି । ଯେପରି ମୋତେ ବୁଡ଼ାଇବ ନାହିଁ । ଶିଷ୍ୟ ପାପରେ ଗୁରୁଙ୍କୁ ଭୋଗିବାକୁ ପଡ଼େ । ତାହାର ସଙ୍ଗରେ ମିଶିବ ନାହିଁ; ତାହାର ଜ୍ୱାଇଁ ବା ଶ୍ୱଶୁର କୁଟୁମ୍ବ ଆସୁ ପଛକେ, କୌଣସି ବିଷୟରେ ରହିବ ନାହିଁ । ନିଜ ଭାବରେ ନିଜେ ରହିବ । ଭଗବାନଙ୍କ ସେବା, ଜପ, ଧ୍ୟାନ କରିବ, ଜପ ଧ୍ୟାନ ଯେତେ ବଢ଼ାଇପାର ବଢ଼ାଇବ । ଘଣ୍ଟାର ଘଣ୍ଟା ପରି ଇଷ୍ଟ ମନ୍ତ୍ର ଜପ କରିବ । ଠାକୁରଙ୍କ ବହି ସବୁ ପଢ଼ିବ ।

## ସାଧନା

"ସାଧନାର ଅର୍ଥ—ଈଶ୍ୱରଙ୍କ ପାଦ ପଦ୍ମରେ ମନ ରଖି ତାହାଙ୍କ ଚିନ୍ତାରେ ମଗ୍ନ ହେବା ।

ତାହାଙ୍କ ନାମ ଜପ କରିବ । ଅନୁରାଗ ନ ଥିଲେ ମଧ୍ୟ କେବଳ ନାମ ଜପ କଲେହିଁ ହେବ । ଇଚ୍ଛାକରି ଜଳରେ ପଡ଼ ଅଥବା କେହି ଜଳକୁ ଠେଲି ଦେଉ, ଲୁଗା ତିନ୍ତିବ ନାହିଁ କି ? ନିତ୍ୟ ଧ୍ୟାନ କରିବ । କହିଁମନ ଉପାୟ । ଧ୍ୟାନ କରୁ କରୁ ମନ ସ୍ଥିର ହୋଇଯିବ । ସବୁବେଳେ ବିଚାର କରିବ । ଅନିତ୍ୟ ବସ୍ତୁ ଆଡ଼କୁ ମନ ଗଲେ ବିଚାର କରି ତହିଁରୁ ଟାଣି ଆଣି ଭଗବାନଙ୍କଠାରେ ଲଗାଇବ । ଜଣେ ଲୋକ ବନ୍ଶୀରେ ମାଛ ଧରୁଥିଲା—ପାଖରେ

କେତେ ବାଙ୍କା ବଙ୍କାଇ ବର ଯାଉଥିଲା, କିନ୍ତୁ ତାହାର ଡେରେଣ୍ଡା ଅଡ଼କୁ ଦୃଷ୍ଟି ।

"ସଂଖ୍ୟା ରଖି ଜପ କଲେ ସଂଖ୍ୟା ପ୍ରତି ଲକ୍ଷ୍ୟ ରହେ । ସେଥିପାଇଁ ସେମିତି ଜପ କରିବ । ମନ ନ ବସୁ ପଛକେ ଜପ କରିବାକୁ ଛାଡ଼ିବ ନାହିଁ । ତୁମ୍ଭର କାମ ତୁମ୍ଭେ କରିଯାଅ । ନାମ କରୁ କରୁ ଧୀରେ ଧୀରେ ମନ ସ୍ଥିର ହୋଇଯିବ—ବାୟୁରହିତ ସ୍ଥାନରେ ପ୍ରଦୀପ ଶିଖା ଯେପରି । ପବନ ବହୁଥିଲେ ପ୍ରଦୀପର ଶିଖା ସ୍ଥିର ରହେକି ? ସେହିପରି ମନରେ ବାସନା କଳ୍ପନା ଥିଲେ ମନ ସ୍ଥିର ହୁଏ ନାହିଁ ।

"ଠିକ ଠିକ ମନ୍ତ୍ର ଉଚ୍ଚାରଣ ନ କଲେ କେବେ ହୁଏ । ଜଣେ ସ୍ତ୍ରୀ ଲୋକଙ୍କ ମନ୍ତ୍ର ଥିଲା 'ରୁକ୍ମିଣୀନାଥାୟ'ଂ । ସେ 'ରୁକୁ' 'ରୁକୁ' ଜପ କରୁଥିଲା । ସେଥିପାଇଁ ସେ କିଛିଦିନ ଠକି ଗଲା ପରେ ତାହାଙ୍କ କୃପାରୁ ତାକୁ ମନ୍ତ୍ର ଠିକ୍ ମିଳିଲା ।

"ଗୃହରେ ଜପ କରିବାବେଳେ ଅସନ ଅନମନ ପ୍ରୟୋଜନ । ବାଟ ଘାଟରେ ଯିବାବେଳେ ଖାଲି ନାମ କଲେହିଁ ହେଲା । ମନ ସ୍ଥିର କରି ଥରେ ଡାକିଲେ ଲକ୍ଷେ ଜପର କାର୍ଯ୍ୟ ହୁଏ । ତା ଛଡ଼ା ସାରାଦିନ ଜପ କରନା ଚାହିଁକି, ମନ ଯଦି ନ ଥାଏ, ସେଥିରେ ଫଳ କଅଣ ? ମନ ମଗ୍ନ ହେବା ଦରକାର, ତାହାହେଲେ ତାହାଙ୍କର କୃପା ମିଳିବ ।

"ଅଳସ୍ୟ ଛାଡ଼ି ସବୁବେଳେ ସବୁ ସମୟରେ ଜପ, ଧ୍ୟାନ କରିବା ଉଚିତ । ଦକ୍ଷିଣେଶ୍ୱରରେ ଥିବା ବେଳେ ଦିନେ ଦେହ ଖରାପ ଥିବାରୁ ଅଳସ୍ୟକରି ଟିକିଏ ଡେରିରେ ଉଠିଲି । ତେତେ-

ବେଳେ ରାତି ତିନିଟାରୁ ଉଠୁଥିଲି । ତହୁଁ ଆରଦିନ ଅତି ଠିକ୍ ଏ ତେବରେ ଉଠିଲି; କ୍ରମଶଃ ଦେଖିଲି ସକାଳେ ଉଠିବାକୁ ଆଉ ଇଚ୍ଛା ହେଉନାହିଁ । ସେତେବେଳେ ମନେକଲି—ଓଃ ! ଅଳସ୍ୟ ଧରିଛି । ତାହାପରେ ଆଳସ୍ୟକୁ ପ୍ରଶ୍ରୟ ନ ଦେଇ ଜୋର କରି ଉଠିବାକୁ ଲାଗିଲି । ଏଥିରୁ ବିଷୟରେ ଖୁବ୍ ଜିଦ କରି ଅଭ୍ୟାସ ରଖିବାକୁ ହୁଏ । ସାଧନ କହ, ଭଜନ କହ, ତୀର୍ଥ-ଦର୍ଶନ କହ, ଅର୍ଥୋ-ପାର୍ଜ୍ଜନ କହ—ସବୁ ପ୍ରଥମ ବୟସରେ କରି ନେବା ଭଲ । ବୁଢ଼ା ବୟସରେ କଅଣ ଆଉ କିଛି କରିବାକୁ ସାମର୍ଥ୍ୟ ରହେକି ? ସେତେବେଳେ ଦେହ ଶିଥିଳ ହୋଇ ପଡ଼େ, କଫ ଶ୍ଳେଷ୍ମାରେ କଣ୍ଠ ଘଡ୍ ଘଡ୍ କରେ, ମନରେ ନୂତନ ଉତ୍ସାହ ବା ବଳ ରହେନାହିଁ ।

“ଜପ, ସଂଖ୍ୟା, କର ଗଣନା; ଏ ସବୁ କେବଳ ମନକୁ ଈଶ୍ୱରଙ୍କଠାରେ ଲଗାଇବା ସକାଶେ । ମନ ସଦାବେଳେ ଏଣେ ତେଣେ ଧାଉଁଛି, ସେଥିପାଇଁ ସେସବୁ କରିବା ଦ୍ୱାରା ମନ ଏଥିପ୍ରତି ଆକୃଷ୍ଟ ହୁଏ । ଯେତେବେଳେ ଜପ କରୁ କରୁ ଭଗବାନଙ୍କ ରୂପ ଦର୍ଶନ ହୁଏ, ଧ୍ୟାନରେ ମନ ମଗ୍ନ ହୋଇ ଯାଏ, ସେତେବେଳେ ଜପ ଆଉ ରହେକି ? ମନ ଧ୍ୟାନରେ ମଗ୍ନ ହେଲେ ତ ସବୁ ହୋଇ-ଗଲା । ମନ ଚଞ୍ଚଳ,—ସ୍ଥିର କରିବା ସକାଶେ ପ୍ରଥମ ପ୍ରଥମ ଅଳ୍ପ ଅଳ୍ପ ନିଃଶ୍ୱାସ ବନ୍ଦ କରି ଧ୍ୟାନର ଚେଷ୍ଟା କରିବାକୁ ହୁଏ । ତାହା ମନର ସ୍ଥିରତାରେ ସାହାଯ୍ୟ କରେ । କିନ୍ତୁ ବେଶୀ ନାକ ଚିପିବା ଭଲନୁହେଁ, ସେଥିରେ ମଥା ଗରମ ହୁଏ ।

ଜୋର କରି ଧ୍ୟାନ କରିବା ଭଲ ନୁହେଁ । ସେଦିନ ଦେଖିଲ ତ, ଜଣେ ଜୋରକରି ଜପ ଧ୍ୟାନ କରିବାରୁ ତାର ମୁଣ୍ଡ ବିଗିଡ଼ି ଗଲା । ମଥା ବିଗିଡ଼ିଲା ତ, ଆଉ କହିଲା କଅଣ ? ଯେପରି

ପେଞ୍ଚକଣ୍ଟାର ଏ ପାଖ ସେ ପାଖ । ଗୋଟିଏ ପେଞ୍ଚ ଢ଼ିଲା ହେଲେ ପାଗଳ ହେଲ, ହୁଏତ ମହାମାୟାଙ୍କ ପାଦରେ ପଡ଼ି ନିଜକୁ ବୁଦ୍ଧି-ମାନ ଭାବି ମନେ କଲ, ମୁଁ ଭଲ ଅଛି; ଓଲଟା ଦିଗରୁ ଗୋଟିଏ ପେଞ୍ଚ କସା ଥିଲେ ଠିକ ବାଟରେ ଗ୍ଲଲେ—ଶାନ୍ତି ଓ ଆନନ୍ଦ ପାଏ । ସବୁ ବେଳେ ସ୍ମରଣ ମନନ କରି ପ୍ରାର୍ଥନା କରିବାକୁ ହୁଏ, 'ପ୍ରଭୁ ସୁବୁଦ୍ଧି ଦିଅ ।

"ଧ୍ୟାନ—ଜପ ଲଗି ଗୋଟିଏ ନିୟମିତ ସମୟ ରଖିବ । କାରଣ କେତେବେଳେ ଯେ କି କ୍ଷଣ ଆସେ ବୁଝି ହୁଏ ନାହିଁ । 'ଯାହା ନ କରେ ଧନେ ଜନେ, ତା କରେ କ୍ଷଣର ଗୁଣେ ।' ହଠାତ୍ ଆସି ଉପସ୍ଥିତ ହୁଏ—ମାଲୁମ ହୁଏନାହିଁ । ସେଥିଲଗି ନିୟମ ରଖିବା ଖୁବ ଦରକାର । ରାତି ଯାଉଛି, ଦିନ ଆସୁଛି, ଦିନ ଯାଉଛି, ରାତି ଆସୁଛି—ଏହାକୁ ସନ୍ଧି ବେଳ କହନ୍ତି, ଏତିକି ବେଳେ ମନ ପବିତ୍ର ଥାଏ । ତେବେ ହାତ ପାହାନ୍ତ ପଦ କାର୍ଯ୍ୟର ବ୍ୟଞ୍ଜିତ ଥାଏ, ତେବେ ସ୍ମରଣ ପ୍ରଣାମ କଲେ ଚଳେ ।

"କୁଣ୍ଡଳିନୀ ଜାଗିବ ସତ । ତାହାଙ୍କ ନାମ କରୁ କରୁ ସବୁ ହେବ । ମନ ସ୍ଥିର ନହେଲେ ପୂଜା ବସି ବସି ତାହାଙ୍କ ଲକ୍ଷ ଲକ୍ଷ ନାମ ଜପ କରିଯାଏ ନାହିଁ କି ? କୁଣ୍ଡଳିନୀ ଜାଗିବା ପୂର୍ବରୁ ଅନାହତ ଧ୍ୱନି ଶୁଣାଯାଏ । ମା ଜଗଦମ୍ବାଙ୍କ କୃପା ଛଡ଼ା ଏହା ହୁଏ କି ? ମହାମାୟା ବାଟ ଛାଡ଼ି ନଦେଲେ କିଛି ହୁଏନାହିଁ ।

"ତାହାଙ୍କ କୃପାରୁ କେବଳ ଭଗବାନ ଲାଭ ହୁଏ । ତେବେ ଧ୍ୟାନ ଜପ କଲେ ମନର ମଇଳା କଟେ । ପୂଜା, ଜପ, ଧ୍ୟାନ ଏସବୁ କରିବାକୁ ହୁଏ । ଯେପରି ଫୁଲକୁ ହଲହଲ କଲେ ସେଥିରୁ ବାସନା

"ଯେଉଁମାନେ ଖୁବ୍ ପରମାର୍ଥ ଚିନ୍ତାରେ ରତ ରହନ୍ତି, ସେମାନଙ୍କ ମନ ଖୁବ ସୂକ୍ଷ୍ମ ଓ ଶୁଦ୍ଧ ହୁଏ । ସେହିମନ ଯେଉଁଠାକୁ ଧରେ ତାକୁ ଖୁବ ଜାବୋଡ଼ି ଧରେ । ସେଥିଲାଗି ଅସକ୍ତପର ମନେ ହୁଏ । ବିଜୁଳି • ଯେତେବେଳେ ଚମକୁଅଛି ସେତେବେଳେ ଅଇନାରେ ଲାଗେ କିନ୍ତୁ ଝରକାରେ ଲାଗେନା ।

## ପ୍ରତିମା ପୂଜା

"ସେସବୁ ଅନାଦିକାଳରୁ କେତେ ଲୋକ ମୂର୍ତ୍ତି ଉପାସନା କରି ମୁକ୍ତି ପାଇଲେଣି, ପାଉଛନ୍ତି, ତାହାକଅଣ କିଛି ନୁହେ ? ଆମ ଠାକୁରଙ୍କ ( ଶ୍ରୀ ରାମକୃଷ୍ଣ ପରମହଂସ ଦେବ ) ସେପରି ସଙ୍କୀର୍ଣ୍ଣ ଭେଦ ବୁଦ୍ଧି ନଥିଲା । ବ୍ରହ୍ମ ସର୍ବବସ୍ତୁରେ ଅଛନ୍ତି । ତାହାହେଲେ ମୁଦ୍ଦା କଅଣ ଜାଣ—ସାଧୁ ପୁରୁଷମାନେ ଆସନ୍ତି ମଣିଷକୁ ପଥ ଦେଖାଇବାକୁ । ଜଣଜଣଙ୍କର ଅଲଗା ଅଲଗା ବାଣୀ । ରାସ୍ତା ଅନେକ, ସେଥିଲାଗି ସେମାନଙ୍କ କଥା ସତ୍ୟ । ଯେପରି ଗୋଟିଏ ଗଛରେ ଧଳା, କଳା, ନାଲିଆ, ନାନାପ୍ରକାର ପକ୍ଷୀ ଆସି ବସି ନାନାପ୍ରକାର ରବ କରନ୍ତି । ଶୁଣିବାକୁ ଭିନ୍ନ ଭିନ୍ନ ହେଲେ ସୁଦ୍ଧା ସବୁ ପକ୍ଷୀଙ୍କ ରବକୁ ଆମେ ରବବୋଲି କହୁଁ— ଗୋଟିଏ ପକ୍ଷୀର ରବ ଯେ ଅନ୍ୟ ସବୁ ପକ୍ଷୀର ରବ ନୁହେଁ, ତାହାନୁହେଁ ।

"ଠାକୁର କହୁଥିଲେ, ଛାୟା, କାୟା, ଘଟ, ପଟ, ସମାନ । ପୁରୀକୁ ଯେଉଁ ଦିନ ଗଲି ସେଦିନ ସକାଳ ଓଳି ଗୋଟିଏ ଘିଅ ଟିଣ କାନ୍ଥଅଡ଼କୁ ଅଉଜାଇ ଦେଇ ସେଥିରେ ଠାକୁରଙ୍କ ଛବି ରଖି

ମଧ୍ୟରେ, ଯେପରି ଚନ୍ଦନ ଘଷିଲେ ଘଷିଲେ ଗନ୍ଧ ବାହାରେ, ସେହିପରି ଭଗବତ୍ ତତ୍ତ୍ୱ ଆଲୋଚନା କରୁ କରୁ ତତ୍ତ୍ୱଜ୍ଞାନର ଉଦୟ ହୁଏ ।

"ଆସନ ଅଭ୍ୟାସ କଲେ ହଜମ ହୁଏ ଓ ବ୍ରହ୍ମଚର୍ଯ୍ୟର ସହାୟତା କରେ । କିନ୍ତୁ ଦେହ ଅଡ଼କୁ ମନଯାଏ, ପୁଣି ଛାଡ଼ିଦେଲେ ଶରୀର ଖରାପ ହୁଏ, ଏସବୁ ବୁଝି କରିବା ଉଚିତ । କୌଣସି ବ୍ୟାୟାମ କରି ଛାଡ଼ିଦେଲେ ଦେହ ଖରାପ ହୁଏ ସେଥିଲାଗି କହୁଥିଲି ।

"ଆସନ ପ୍ରାଣାୟାମ କଲେ ସିଦ୍ଧି (ଅଣିମା, ଲଘିମା ପ୍ରଭୃତି ଅଷ୍ଟସିଦ୍ଧି ) ହୁଏ । ସିଦ୍ଧି ଲୋକଙ୍କୁ ପଥଭ୍ରଷ୍ଟ କରେ । ଅଳ୍ପକିଛି ଧ୍ୟାନ ଜପ କଲେହିଁ କୁଣ୍ଡଳିନୀ ଜାଗିବ । କିନ୍ତୁ ଧୀରେ ଧୀରେ କଅଣ ଜାଗିବେ ? ଧ୍ୟାନ,ଜପ କର । ଧ୍ୟାନ କରୁକରୁ,ଏପରି ମନ ସ୍ଥିର ହୋଇଯିବଯେ ଧ୍ୟାନ ଛାଡ଼ିବାକୁ ମନ ହେବ ନାହିଁ । ଯେଉଁଦିନ ଧ୍ୟାନ ନହେବ ସେଦିନ ଜୋରକରି ଧ୍ୟାନ କରିବାର ଆବଶ୍ୟକ ନାହିଁ । ଯଦି ଧ୍ୟାନ ନହୁଏ ତେବେ ଜପ କରିବ. 'ଜପାତ୍ ସିଦ୍ଧି ।' ଜପ କଲେହିଁ ଇଷ୍ଟ ଲାଭହୁଏ । ପ୍ରାଣାୟାମ ଅଳ୍ପ ଅଳ୍ପ କରିପାର । ବେଶୀ କରି ମୁଣ୍ଡ ଗରମ କରିବା ଉଚିତ ନୁହେଁ । ମନ ଯଦି ଧୀରେ ଧୀରେ ସ୍ଥିର ହୋଇ-ଯାଏ ତେବେ ପ୍ରାଣାୟାମ କରିବାର ପ୍ରୟୋଜନ ବା କଅଣ । ଜପ କରୁକରୁ ଇଷ୍ଟମୂର୍ତ୍ତିଙ୍କ ଧ୍ୟାନ କରିବାକୁ ହୁଏ । ଧ୍ୟାନ କରିବାବେଳେ ପ୍ରଥମ ମୁଖଟି ଆସେ ସତ; କିନ୍ତୁ ଇଷ୍ଟଙ୍କ ସମସ୍ତ ଅଙ୍ଗ ଧ୍ୟାନ କରିବାକୁ ହୁଏ ।

"ଜପ-ତପ ଦ୍ୱାରା କର୍ମ ପାଶ କଟିଯାଏ ।,କିନ୍ତୁ ପ୍ରେମ ଭକ୍ତି ଛଡ଼ା ଭଗବାନ ମିଳନ୍ତି ନାହିଁ । ଜପ-ତପ କଅଣ ଜାଣ ? ତାହାଦ୍ୱାରା ଇନ୍ଦ୍ରିୟଗୁଡ଼ିକର ପ୍ରଭାବ ଖର୍ବ ହୋଇଯାଏ ।

"ଯେଉଁମାନେ ଖୁବ୍ ପରମାର୍ଥ ଚିନ୍ତାରେ ରତ ରହନ୍ତି, ସେମାନଙ୍କ ମନ ଖୁବ ସୂକ୍ଷ୍ମ ଓ ଶୁଦ୍ଧ ହୁଏ । ସେହିମନ ଯେଉଁଠାକୁ ଧରେ ତାକୁ ଖୁବ୍ ଜାବୋଡ଼ି ଧରେ । ସେଥିଲାଗି ଅସଲ୍ଲପଣ ମନେ ହୁଏ । ବିଜୁଳି ଯେତେବେଳେ ଚମକିଉଠେ ସେତେବେଳେ ଅଇନାରେ ଲଗେ କିନ୍ତୁ ଝରକାରେ ଲାଗେନା ।

## ପ୍ରତିମା ପୂଜା

"ସେହି ଅବତାରଙ୍କୁ କେତେ ଲୋକ ମୂର୍ତ୍ତି ଉପାସନା କରି ମୁକ୍ତି ପାଇଲେଣି, ପାଉଛନ୍ତି, ତାହାକଅଣ କିଛି ନୁହେ ? ଆମ ଠାକୁରଙ୍କ ( ଶ୍ରୀ ରାମକୃଷ୍ଣ ପରମହଂସ ଦେବ ) ସେପରି ସଙ୍କୀର୍ଣ୍ଣ ଭେଦ ବୁଦ୍ଧି ନଥିଲା । ବ୍ରହ୍ମ ସର୍ବବସ୍ତୁରେ ଅଛନ୍ତି । ତାହାହେଲେ ମୁଁଛା କଅଣ ଜାଣ—ସାଧୁ ପୁରୁଷମାନେ ଅସନ୍ତ ମଣିଷକୁ ପଥ ଦେଖାଇବାକୁ । ଜଣଜଣଙ୍କର ଅଲଗା ଅଲଗା ବାଣୀ । ରାସ୍ତା ଅନେକ, ସେଥିଲାଗି ସେମାନଙ୍କ କଥା ସତ୍ୟ । ଯେପରି ଗୋଟିଏ ଗଛରେ ଧଳା, କଳା, ନାଲିଆ, ନାନାପ୍ରକାର ପକ୍ଷୀ ଆସି ବସି ନାନାପ୍ରକାର ରବ କରନ୍ତି । ଶୁଣିବାକୁ ଭିନ୍ନ ଭିନ୍ନ ହେଲେ ମଧ୍ୟ ସବୁ ପକ୍ଷୀଙ୍କ ରବକୁ ଆମେ ରବବୋଲି କହୁଁ— ଗୋଟିଏ ପକ୍ଷୀର ରବ ଯେ ଅନ୍ୟ ସବୁ ପକ୍ଷୀର ରବ ନୁହେଁ, ତାହାନୁହେଁ ।

"ଠାକୁର କହୁଥିଲେ, ଘୁସ୍ପା, ଢାସ୍ପା, ଘଟ, ପଟ, ସମାନ । ପୁରୀକୁ ଯେଉଁଦିନ ଗଲି ସେଦିନ ସକାଳ ଓଳି ଗୋଟିଏ ପିଲା ଟିଣ କାନ୍ଥଅଡ଼କୁ ଅଡ଼ୁଯାଇ ଦେଇ ସେଥିରେ ଠାକୁରଙ୍କ ଛବି ରଖି

ପୂଜାରୀର ତରଭରରେ ଜଗନ୍ନାଥଙ୍କୁ ଦେଖିବାକୁ ଗଲି । ଘର, କବାଟ ସବୁ ବନ୍ଦ ଥିଲା । ଆସି ଦେଖିଲି ଠାକୁରଙ୍କ ଛବି ଟିଣତଳେ ପଡ଼ିରହିଛି । ସମସ୍ତେ ଆସି ଦେଖିଲେ । ସମସ୍ତେ ମନେକଲେ ଚୋର ପଶିଛି । କିନ୍ତୁ ଘରର ଜିନିଷପତ୍ର ଯେଉଁଠି ଥିଲା ସେଇଠି ରହିଛି; କୌଣସି ଜିନିଷ ଏପାଖ ସେପାଖ ହୋଇନାହିଁ । ଶେଷରେ ଦେଖିଲି ବଡ଼ ବଡ଼ ନାଲିଆ ପିମ୍ପୁଡ଼ି ଟିଣରେ ଲାଗିଛନ୍ତି । ଢେର ଟିଣ ଥିଲା ପରା—ସେହି ପିମ୍ପୁଡ଼ିଗୁଡ଼ିକ ଠାକୁରଙ୍କ ଛବିରେ ଲାଗିଥିଲେ । ସେଥିସକାଶେ ଠାକୁରେ ସେଥିରୁ ଓହ୍ଲାଇ ତଳେ ବସିଲେ । ଛବି ଯେ ତାହାଙ୍କ ଛାୟା । ଡାକୁ ଡାକୁ ଛବିରେ ତାହାଙ୍କ ଆବିର୍ଭାବ ହୁଏ ।

•

"ଦେଖ, ମାଆ, ଠାକୁରଙ୍କୁ ଭୋଗ ବା ମଣୋହି ଦେବାବେଳେ ଆପଣାର ଭାବ କରିବ, ଆସ, ବସ, ନିଅ, ଖାଅ । ଆଉ ପୁଣି ଭାବିବ, ସେ ଆସିଛନ୍ତି, ବସିଛନ୍ତି, ଖାଉଛନ୍ତି । ଆପଣାର ଲୋକଙ୍କ ପାଖରେ କିଅଣ ମନ୍ତ୍ର ଯନ୍ତ୍ର ଲାଗେ । ସେସବୁ ହେଲା କିପରି ଜାଣ ? ଯେପରି ଘରକୁ କୁଣିଆ ଆସିଲେ ସେମାନଙ୍କୁ ଆଦର ଯତ୍ନ କରିବାକୁ ପଡ଼େ ସେହିପରି; କିନ୍ତୁ ଖୁବ ଆପଣା ଲୋକଙ୍କ ପାଖରେ ସେ ସବୁ ପ୍ରୟୋଜନ ହୁଏ କି? ତାହାଙ୍କୁ ଯେପରି ଭାବରେ ଦେବ ସେହିପରି ଭାବରେ ସେ ଗ୍ରହଣ କରିବେ ।

"ପୂଜା ପଦ୍ଧତି ମତରେ ଠାକୁରଙ୍କୁ ଭୋଗ ନିବେଦନ କରିବାରେ ମନ୍ତ୍ର କିଛି ଦରକାର ନାହିଁ । ଇଷ୍ଟ ମନ୍ତ୍ରରେହିଁ ସବୁ କାମ ହେବ ।

ନୂଆ ଭକ୍ତମାନଙ୍କୁ ଠାକୁରଙ୍କ ସେବା କରିବାକୁ ହୁଏ । କାରଣ ସେମାନଙ୍କର ନବାନୁରାଗ, ସେବା ଭଲହୁଏ । ସେବା କଲେହିଁ

ହେଲ, ମାଅ ? ସେବାପରାଧ ଯେପରି ନ ଘଟେ ସେଥିପ୍ରତି ଲକ୍ଷ୍ୟ ରଖିବାକୁ ହେବ । ତେବେ କଅଣ ଜାଣ ? ମଣିଷ ଅଜ୍ଞ ଜାଣି ସେ କ୍ଷମା କରନ୍ତି । ଚନ୍ଦନରେ ଯେପରି ଖଦଡ଼ା ନରହେ, ଫୁଲ ବେଲ ପତ୍ର ଯେପରି ପୋକଖିଆ ନହୁଏ । ପୂଜା ବା ପୂଜା କାମ୍ପି କଲବେଳେ ନିଜର କୌଣସି ଅଙ୍ଗରେ, କେଶରେ, ଅଥବା ଲୁଗାରେ ହାତ ନଲଗେ । ଭୋଗ ମଣୋହି ଠିକ ସମୟରେ ଦେବାକୁ ହୁଏ ।

"ଠାକୁର ମୋତେ କହୁଥିଲେ, ଦେଖ—ଏହାପରେ ଘରେ ଘରେ ମୋର ପୂଜା ହେବ। ପରେ ଦେଖିବ—ଏହାକୁ ସବୁ ମାନିବେ। ତୁମେ କୌଣସି ଚିନ୍ତା କରନା ।

## ଭକ୍ତି

"ଠାକୁରଙ୍କୁ ଓ ମୋତେ ଅଭେଦ ଦେଖିବ। ଯେତେବେଳେ ଯେଉଁ ଭାବରେ ଦର୍ଶନ ପାଇବ ସେହି ଭାବରେ ଧ୍ୟାନ-ସ୍ତୁତି କରିବ । ଧ୍ୟାନ କଲେ ତ ପୂଜା ଶେଷ ହେଲ । ଏହିଠାରେ (ହୃଦୟରେ) ଆରମ୍ଭ ଓ ଏହିଠାରେ (ମସ୍ତକରେ) ଶେଷ କରିବ । ମନ୍ତ୍ର-ତନ୍ତ୍ର କିଛି ନୁହେଁ ମାଅ, ଭକ୍ତିହିଁ ସବୁ । ଠାକୁରଙ୍କ ମଧ୍ୟରେ ବ୍ରହ୍ମ, ଇଷ୍ଟ ସବୁ ମିଳିବ । ସେହି ସବୁ ।

ମୁକ୍ତି ତ ସବୁବେଳେ ସେ ଦେଇ ପାରନ୍ତି । କିନ୍ତୁ ଭକ୍ତି ଭଗ-ବାନ ସହଜରେ ଦଅନ୍ତି ନାହିଁ ।

"ଗୀତାରେ କଅଣ ପଢ଼ିନାହିଁ—ଫଳ, ପୁଷ୍ପ, ଜଳ, ଭକ୍ତି ଭରେ ଯେ ଭଗବାନଙ୍କୁ ଦଅନ୍ତି ତାହା ସେ ଗ୍ରହଣ କରିଥାନ୍ତି ।

"ମାଂସ ଖାଇ ସ୍ୱର୍ଗ ଯାଆନ୍ତି ଅନେକେ କହନ୍ତି, କିନ୍ତୁ ଶୈଶବରୁ ଅନାଘ୍ରାତ ଫୁଲ ପରି ମନଟି ଯେ ଠାକୁରଙ୍କ ପାଦରେ ଅର୍ପଣ କରେ ସେ ଧନ୍ୟ ।

"ମଣିଷଙ୍କ ବୁଦ୍ଧି କେତେ କି ? କଅଣ ମାଗିବାକୁ ଯାଇ କଅଣ ମାଗିବ—ଶେଷରେ ଶିବ ଗଢ଼ିବାକୁ ଯାଇ ମାଙ୍କଡ଼ ଗଢ଼େ । ତାହାଙ୍କ ଶରଣାଗତ ହୋଇ ରହିବା ଭଲ । ଯେତେବେଳେ ଯାହା ଦରକାର ତାହା ସେ ଦେବେ । ଭକ୍ତି କାମନା କାମନାର ଅନ୍ତର୍ଗତ ନୁହେଁ, ଏହା ବାସନାରହିତ କାମନା । ଯେ ଠାକୁରଙ୍କ ଶରଣାଗତ-ତାହାର ବ୍ରହ୍ମଶାପରେ ମଧ୍ୟ କିଛି ହୁଏନାହିଁ ।

"ଠାକୁରଙ୍କ ଠାରେ ଶରଣାଗତ ହେଲେ ସବୁ ହୋଇଗଲା । ତ୍ୟାଗହିଁ ଥିଲା ତାଙ୍କର ଐଶ୍ୱର୍ଯ୍ୟ । ଥରେ ତାହାଙ୍କ ବସ୍ତି ଅରେ ମସଲା ନ ଥିବାରୁ ଖାଇ ପିଇ ନହବତ ଘରକୁ ଗଲେ । ଗଣ୍ଡାଏ ଜୁଆଣି ଖାଇବାକୁ ଦେଲି; ଅଉ କିଛି ସାମାନ୍ୟ ଜୁଆଣି ଗୋଟିଏ କାଗଜରେ ମୋଡ଼ି ତାହାଙ୍କ ହାତରେ ଦେଇ କହିଲି, 'ଏହିଟା ନେଇ ଯାଆନ୍ତୁ' । ନହବତ ଘରଠାରୁ ସେ ବରାବର ଗଙ୍ଗା ତୀରକୁ ଚାଲିଗଲେ, ସେଠାରେ ଯାଇ କହିବାକୁ ଲାଗିଲେ ମାଆ ବୁଝିଲି, ମାଆ ବୁଝିଲି । ଶେଷରେ ହୃଦୟ ( ଠାକୁରଙ୍କ ଭଣଜା ) ଧାଇଁ ଯାଇ ତାହାଙ୍କୁ ଟାଣି ଅଣିଲେ । ଅଉ ଟିକିଏ ଗଲେହିଁ ଗଙ୍ଗାରେ ପଡ଼ିଯାଇ ଥାଆନ୍ତେ । ହାତରେ ଗଣ୍ଡାଏ ଜୁଆଣି ଦେଇଥିଲି ପରା ! ସାଧୁର ସଞ୍ଚୟ କରିବାର ନୁହେଁ । ସେଥିପାଇଁ ସେ ବାଟ ଦେଖି ପାରି ନ ଥିଲେ । ତାହାଙ୍କର ତ୍ୟାଗ ଷୋଳଅଣା ।

"ଭଗବାନଙ୍କ ଲାଗି ସବୁ ତ୍ୟାଗ କରୁଛନ୍ତି କିଏ ? ଈଶ୍ୱରଙ୍କ ଶରଣାଗତ ହେଲେ ବିଧିର ବିଧି ଖଣ୍ଡନ ହୋଇଯାଏ । ତାହାଙ୍କ ନିଜର କଲମ ନିଜ ହାତରେ କାଟି ପାରନ୍ତି ସିନା !

"କଳିକାଳରେ କେବଳ ସତ୍ୟର ନିଷ୍ଠା ଥିଲେହିଁ ଭଗବାନ ମିଳନ୍ତି । ଠାକୁରେ କହୁଥିଲେ ଯେ ସତ୍ୟ କଥାଟି ଧରି ରହିଛନ୍ତି ସେ ଭଗବାନଙ୍କ କୋଳରେ ଶୋଇ ରହିଛନ୍ତି ।

"ଠାକୁରଙ୍କୁ ଭାବିଲେହିଁ ସବୁ ଭାବ ଆସିବ; ସେ ସବୁ କରିଛନ୍ତି । ସେଥିଲାଗି ତାଙ୍କୁହିଁ ଚିନ୍ତା କରିବା । ଠାକୁରେ କହୁଥିଲେ ମୋତେ ଯେ ସ୍ମରଣ କରେ ତାହାର କେବେହେଲେ ଖାଇବାର କଷ୍ଟ ହୁଏ ନାହିଁ । ତାହାଙ୍କୁ ସ୍ମରଣ କଲେ କୌଣସି ଦୁଃଖ ରହେନା ।

"ପୂର୍ବବଙ୍ଗଦେଶୀୟ ଦୁର୍ଗାଚରଣ (ନାଗ ମହାଶୟ) ଆସିଥିଲ । ତାହାର ଗୁରୁଭକ୍ତି ଥିଲ ! ତାଙ୍କୁ ଥରେ ଶାଳ ପତ୍ରରେ ପ୍ରସାଦ ଦେଇଥିଲୁ । ପତ୍ର ସୁଦ୍ଧା ଖାଇ ଦେଲ ! କାଳିଆ, ଶୁଖିଲ ଦେହ—କେବଳ ଆଖି ଦୁଇଟି ବଡ଼ ବଡ଼ ଉଜ୍ଜ୍ୱଳ ଥିଲ । ପ୍ରେମର ଚକ୍ଷୁ, ସବୁବେଳେ ପ୍ରେମାଶ୍ରୁରେ ସିକ୍ତ ।

"ଯେଉଁ ଜିନିଷ ପାଇଛ ସେଥିରେ ବୁଡ଼ିଯାଅ । ଜପ ଧ୍ୟାନ କରିବ, ସତ୍ ସଙ୍ଗରେ ରହିବ, ଅହଙ୍କାରକୁ କେବେହେଲେ ଢୋକିବାକୁ ଦେବ ନାହିଁ । ସବୁବେଳେ ଭାବିବ, ମୁଁ କାହାର ସନ୍ତାନ ? କାହାର ଆଶ୍ରିତ ? ଯେତେବେଳେ ମନରେ କୁଭାବ ଆସିବ ସେତେବେଳେ ମନକୁ କହିବ, ତାହାଙ୍କ ପୁଅ ହୋଇ ମୁଁ କି କାମ କରିବାକୁ ଯାଉଛି ? ଦେଖିବ, ମନରେ ବଳ୍, ଶାନ୍ତି ଆସିବ । ପୁଣି ମନରେ ଭାବିବ—ଯଦି ଅନ୍ନ କେହି ନ ଥାନ୍ତି ତାହାହେଲେ ସୁଦ୍ଧା ମୋର ଏକମାତ୍ର ମାଆ ଅଛନ୍ତି ।"

## କର୍ତ୍ତବ୍ୟ ପରାୟଣତା

"ଯାହା ପ୍ରତି ଯେପରି କର୍ତ୍ତବ୍ୟ ତାହାପ୍ରତି ସେହିପରି କରିବ । କିନ୍ତୁ ଏକ ଭଗବାନଙ୍କ ଛଡ଼ା ଅନ୍ୟ କାହାକୁ ପ୍ରୀତି କରିବ ନାହିଁ । ଅନ୍ୟଙ୍କୁ ପ୍ରୀତି କଲେହିଁ ଦୁଃଖ ପାଇବ ।

"ମାଆଙ୍କ ସେବା କରିବା ତୁମ୍ଭର ସବୁଠାରୁ ବଡ଼ ଧର୍ମ ଜାଣିବ । ତେବେ ଯଦି ସେ ଭଗବାନଙ୍କ ପଥରେ ଯିବାକୁ ବାଧା ଦିଅନ୍ତି ତାହାହେଲେ ଅନ୍ୟ କଥା ।

"ଦୟା ଯାହାର ନାହିଁ ସେ କଅଣ ମଣିଷ ? ସେ ତ ପଶୁ । ମୁଁ କେବେ କେବେ ଦୟାରେ ଅସ୍ଥିର ହୋଇଯାଏଁ, ଭୁଲି ଯାଏଁ ଯେ ମୁଁ କିଏ ।

"ଦେଖିଲି ଭିଖାରୀକୁ ତଡ଼ି ଦେଲ । ନିଜ କାମ ଛାଡ଼ି ଟିକିଏ ଉଠି ଆସି ଭିଖାରୀକୁ ଭିକ ଗଣ୍ଡିଏ ଦେବାକୁ ସେ ପାରିଲ ନାହିଁ, ଅଳସ୍ୟ ହେଲା । ଯାହାର ଯାହା ପ୍ରାପ୍ୟ ସେଥିରୁ ତାକୁ ବଞ୍ଚିତ କରିବା ଉଚିତ କି ? ଏହି ଯେ ପନିପରିବା ଚୋପା—ତାହା ମଧ୍ୟ ଗୋରୁଙ୍କର ପ୍ରାପ୍ୟ । ଏଗୁଡ଼ିକ ଗୋରୁଙ୍କ ମୁହଁରେ ଦେବାକୁ ହୁଏ ।

"ଶୁଚି ଅଶୁଚି କିଛି ନୁହେଁ; ଦୁଇଥର 'ଗୋବିନ୍ଦ ଗୋବିନ୍ଦ' କହିଲେ ସବୁ ଶୁଦ୍ଧ ହୋଇଯାଏ । ମନ ହେଲା ସବୁ, ମନ ହେଲା ଶୁଦ୍ଧ, ମନ ହେଲା ଅଶୁଦ୍ଧ । ନିଜ ମନର ଦୋଷ ଥିଲେହିଁ ମଣିଷ ଅପରଙ୍କ ଦୋଷ ଦେଖେ । ଅପରଙ୍କ ଦୋଷ ଦେଖିଲେ ତାହାର କଅଣ ହେଲା ? ନିଜର କ୍ଷତି ହେଲା । ଯାହାର ଶୁଦ୍ଧ ମନ ସେ ସବୁ

ଶୁଦ୍ଧ ଦେଖେ । ଅନେକ ସାଧନ ତପସ୍ୟା କଲେ, ପୂର୍ବ ଜନ୍ମର ଅନେକ ତପସ୍ୟା ଥିଲେ, ଏ ଜନ୍ମରେ ମନଟି ଶୁଦ୍ଧ ହୁଏ । ବହୁ ପାପ, ମହାପାପ ନ ଥିଲେ କଅଣ ମନ ଅଶୁଦ୍ଧ ହୁଏ ? ଅଶୁଦ୍ଧ ମନ ସହଜରେ ବଦଳେ ନାହିଁ ।

“ମୋର ପିଲା ବେଳରୁ ଏପରି ଅଭ୍ୟାସ ଯେ ମୁଁ କାହାର ଦୋଷ ଦେଖି ପାରେ ନାହିଁ । ମୋ ପାଇଁ ଯେ ଟିକଏ କାର୍ଯ୍ୟ କରେ ସେହି ଟିକକ ମୁଁ ସବୁବେଳେ ମନେ ରଖିବାକୁ ଚେଷ୍ଟା କରେଁ । ମଣିଷଙ୍କ ଦୋଷ ଦେଖିବା କଅଣ ? ମଣିଷଙ୍କ ଦୋଷ ଦେଖିବା ଭଲ କି ? ତାହା ମୁଁ କେବେ ଶିଖି ନାହିଁ । କ୍ଷମାରୂପା ତପସ୍ୟା । ଯଦି ଶାନ୍ତି ଚାହଁ, ମାଆ, କହି ଦେଉଛି କାହାର ଦୋଷ ଦେଖିବ ନାହିଁ । ନିଜର ଦୋଷ ଦେଖିବ । ଜଗତକୁ ଆପଣାର କରିବାକୁ ଶିଖ, କେହି ପର ନୁହେଁ, ମାଆ, ଜଗତ ତୁମ୍ଭର ।

“ଭଗବାନଙ୍କ ପାଇଁ କେତେକ . ସ୍ୱାମୀଙ୍କ ମତ ବିରୁଦ୍ଧରେ ଯଦି କେହି ସ୍ତ୍ରୀ ଅନୁନୟ ବିନୟ ବା ସଦାଲାପ ଦ୍ୱାରା ସଂଯମୀ ହେବାକୁ ଚେଷ୍ଟା କରେ ସେଥିରେ କୌଣସି ପାପ ହୁଏ ନା । କାହିଁକି ହେବ ? ଇନ୍ଦ୍ରିୟ ସଂଯମ ଦରକାର । ଏଥି ଯେ ବିଧବାଙ୍କର ଏତେ ବିଧି ବ୍ୟବସ୍ଥା, ସବୁ ଇନ୍ଦ୍ରିୟ ସଂଯମ ପାଇଁ ।

“ଭଗବାନଙ୍କୁ ଡାକୁ ବା ନ ଡାକୁ ଯେ ବିବାହ ନ କରେ ସେ ତ ଅର୍ଦ୍ଧମୁକ୍ତ । ଯେତେବେଳେ ଭଗବାନଙ୍କଠାରେ ମନ ହେବ ସେତେବେଳେ ତରତରରେ ଅଗେଇ ଯିବ । ଯେଉଁମାନଙ୍କର ମହା ପାପ ସେମାନେ ବିବାହ କରି ସଂସାର କରନ୍ତି । ଭଗବାନଙ୍କ-ଠାରେ ମନ ରହିଲେ ସୁଦ୍ଧା ଅଳ୍ପ ଉଠି ନ ପାରେ । ହାତଗୋଡ଼

ସବୁ ବନ୍ଧା । ଉଠିବ କପରି ? ତୁମ୍ଭେ ବିବାହ କରନାହିଁ, ସଂସାର କର ନାହିଁ । ବିବାହ କରିବା ବଡ଼ ଝଞ୍ଜାଳ । ବିବାହ ନ କଲେ ଅଉ କଅଣ ? ଯେଉଁଠାରେ ରହି ପଡ଼ିଛ ସେହିଠାରେ ସ୍ୱାଧୀନ ।

"ଯାହାର ଅନେକ ଗୁଡ଼ିଏ ପିଲା ଛୁଆ ହୋଇ ଯାଆନ୍ତି, ଠାକୁରେ ତାହାକୁ ଗ୍ରହଣ କରି ପାରନ୍ତି ନାହିଁ । ଗୋଟିଏ ଦେହରୁ ପଚିଶଟା ପିଲା ବାହାରୁଛି, ସେ କି ମଣିଷ ? ସଂଯମ ନାହିଁ, କିଛି ନାହିଁ—ଯେପରି ପଶୁ ।"

"ସଂସାରୀ ଲୋକ ଖାଲି ଗଣ୍ଡା ଗଣ୍ଡା ଯେପରି ପିଲା ଜନ୍ମ ଦେଉଥାଏ, ସେହିଟା ସତେ ଯେପରି ତାର କାର୍ଯ୍ୟ । ଠାକୁର କହୁଥିଲେ, ଗୋଟିଏ ଦୁଇଟି ପିଲାଛୁଆ ହୋଇଗଲେ ଦେଖିକି ସଂଯମରେ ରହିବ ।

"ମାଇପି ମଣିଷଙ୍କ ଏତେ ରାଗ କାହିଁକି ? ସହିବା ଦରକାର । ଶୈଶବରେ ବାପମାଅଙ୍କ କୋଳ, ଯୌବନରେ ସ୍ୱାମୀଙ୍କ ଅଶ୍ରୟ ଛଡ଼ା ସ୍ତ୍ରୀ ଲୋକଙ୍କୁ ରକ୍ଷା କରିବାର ଅଉ କିଏ ଅଛି କି ? ମାଇପି ଲୋକ ବଡ଼ ଖରାପ ଜାତି, ହଠାତ୍ କେହି ଯଦି ପଦେ ଅଧେ କଥା କହି ଦେଲାତ ଇଜ୍ଜତ ଗଲା । ମଣିଷଙ୍କ କଥାଁ ତଂ କହି ପକେଇଲେ ହେଲା । ସେଥିଲାଗି ଦୁଃଖ କଷ୍ଟ ସହ୍ୟ କରି (ସ୍ୱାମୀ ବା ବାପମାଅଙ୍କ ପାଖରେ) ରହିବାକୁ ହୁଏ ।

"ସେ କଅଣ ? ମାଇପି ଲୋକଙ୍କ ଅଣ୍ଟୁରୁ ଲୁଗା ଖସିଯିବ କାହିଁକି ? ଅଣ୍ଟୁରୁ ଲୁଗା ଖସିଯିବା ମାଇପି ଲୋକଙ୍କ ନଗ୍ନତାର ସମାନ ।

"ମାଇପି ଲୋକଙ୍କ ତର୍କ କଅଣ ? ଜ୍ଞାନୀ ପୁରୁଷମାନେ ତର୍କ କରି କିଛି ସ୍ଥିର କରି ପାରି ନାହାନ୍ତି । ବ୍ରହ୍ମ କଣ ତର୍କର ବସ୍ତୁ ?

"ଠାକୁରେ କହୁଥିଲେ, 'ଚୋରୁ, ଗୋରୁ, ଧାନ—ଏ ତିନି ରକ୍ଷିବ ଅପଣା ବିଦ୍ୟମାନ ।' ଗଛ ଛୋଟିଆ ଥିବା ବେଳେ ବାଡ଼ ଦେଇ ରକ୍ଷିବାକୁ ହୁଏ । ଅନ୍ୟଥା ଛେଳି, ଗୋରୁ ଖାଇଯିବେ ।

"ଦେଖ ମାଆ, ସ୍ୱାମୀ ସ୍ତ୍ରୀ ଯେବେ ଏକମତ ହେଲେ ତେବେ ଧର୍ମ ଲାଭ ହୁଏ ।

"ମଠକୁ ଅଥବା ଯେଉଁ ସବୁ ସ୍ଥାନରେ ସାଧୁ ସନ୍ନ୍ୟାସୀ ଥାଆନ୍ତି ସେ ସ୍ଥାନକୁ ବେଶୀ ଯିବା ଭଲ ନୁହେଁ । ତୁମ୍ଭେମାନେ ହୁଏତ ଭଲ ମନରେ, ଭକ୍ତି ଭାବରେ ଯିବ, କିନ୍ତୁ ସେମାନଙ୍କର ମନର ଯଦି କ୍ଷତି ହୁଏ ତାହାହେଲେ ତୁମ୍ଭମାନଙ୍କର ମଧ୍ୟ ପାପ ହେବ ।

"ଦେଖ ମାଆ, ପୁରୁଷ ଜାତିକୁ କେବେ ବିଶ୍ୱାସ କରିବ ନାହିଁ—ଅନ୍ୟ କଥା କଅଣ କହୁଛ, ନିଜର ବାପକୁ ନୁହେଁ, ଭାଇକୁ ମଧ୍ୟ ନୁହେଁ, ଏପରିକି ସ୍ୱୟଂ ଭଗବାନ ଯଦି ପୁରୁଷ ରୂପ ଧାରଣ କରି ତୁମ୍ଭ ପାଖକୁ ଆସନ୍ତି ତାହାଙ୍କୁ ସୁଦ୍ଧା ବିଶ୍ୱାସ କରିବ ନାହିଁ ।

"ଯେତେବେଳେ ଇଚ୍ଛା ସେତେବେଳେ ଯାହା ତାହା ସଙ୍ଗରେ ତୀର୍ଥ କରିବାକୁ ଯିବନାହିଁ । ତୁମ୍ଭ ହାତରେ ଦୁଇ ପଇସା ଯଦି ହୁଏ ଦଶପୋଡ଼ଏ ଜଣ ବ୍ରାହ୍ମଣ ଖୁଆଇ ଦେବ । ହେଇ ଦେଖିଲ ତ ଜଣେ ତୀର୍ଥ କରିବାକୁ ଯାଇ କପାଳ ଠକି ଆସିଲା—'ତୀର୍ଥ ଗମନ, ଦୁଃଖ ଭ୍ରମଣ, ମନ ଉଚାଟନ କର ନା ରେ, ଭମିତ୍ତ ବାର, ଘରରେ ବସିର, ଯପ କରପାର ।' ମନ ଯଦି ଗୋଟିଏ ସ୍ଥାନରେ ଶାନ୍ତିରେ ରହେ ତେବେ ତୀର୍ଥ ଭ୍ରମଣର ପ୍ରୟୋଜନ କଅଣ ?

"ଦକ୍ଷିଣେଶ୍ୱରରେ ଥିବାବେଳେ ଜଣେ ବୁଢ଼ୀ ମୋ ପାଖକୁ ଆସୁଥିଲା । ଆଗେ ସେ ଅସିଥିଲା । ବର୍ତ୍ତମାନ ସେ ବୁଢ଼ୀ ହୋଇ ଯିବାରୁ ହରି ନାମ କରେ । ତାହା ସଙ୍ଗରେ କଥା କହୁଥିଲି । ଏତେ ଠାକୁରେ ଦେଖି କହିଲେ, ସେ କାହିଁକି ଏଠାକୁ ଆସିଛି ? ମୁଁ କହିଲି, ସେ ବର୍ତ୍ତମାନ ଭଲ କଥା କହେ, ହରି କଥା କହେ, ସେଥିରେ ଦୋଷ କଅଣ ? ମଣିଷଙ୍କର ପୂର୍ବର ମନୋଭାବ ସବୁବେଳେ ଥାଏ କି ? ଏହା ଶୁଣି ଠାକୁରେ କହିଲେ, ଛି, ଛି, ବେଶ୍ୟା ସଙ୍ଗରେ କଥା ? ପରେ ସେ କୁବୁଦ୍ଧି ଶିଖାଇ ପାରେ, ଏହି ଭୟରେ ସେ ସବୁ ଲୋକଙ୍କ ସଙ୍ଗରେ କଥାବାର୍ତ୍ତା କରିବାକୁ ମନା କଲେ । ଏହିପ୍ରକାରରେ ମୋତେ ସେ ରକ୍ଷା କରୁଥିଲେ ।

"ଠାକୁରେ ଅନେକେ ମୋତେ କହିଲେ, ଟିକିଏ ଟିକିଏ ଚୁଲବୁଲ କରିବ । ତାହା ନ ହେଲେ ଦେହ ଖରାପ ହେବ । ସେତେବେଳେ ନହବତରେ ରହୁଥିଲି । ପାହାନ୍ତିଆ ରାତି ୪ଟାରେ ଉଠି ଗଙ୍ଗା ସ୍ନାନ କରି ଘରେ ପଶୁଥିଲି ।

"ମାଡ୍ରାଜରୁ ଦୁଇଟି ଝିଅ, ଚୋଉଦ କି ବାଇଶ ବର୍ଷ ବୟସ, ବିବାହ କରିନାହାନ୍ତି, ନିବେଦିତା ସ୍କୁଲରେ ଅଛନ୍ତି । ଆହା ! ସେଥିରେ କି ସୁନ୍ଦର କାମ ଶିଖିଛନ୍ତି । ଏଠାରେ ଅମ୍ଭମାନଙ୍କର— ଏଠାରେ ପୋଡ଼ା ଦେଶର ଲୋକମାନେ ଆଠ ବର୍ଷ ଯାଉ ନ ଯାଉଣୁ କହନ୍ତି—ପର ଗୋତ୍ର କରି ଦିଅ, ପର ଗୋତ୍ର କରିଦିଅ ।

"ତ୍ୟାଗୀ ପୁତ୍ର ଗର୍ଭରେ ଧାରଣ କରିବା ବଡ଼ ସୌଭାଗ୍ୟର କଥା । ମଣିଷ ଗୋଟିଏ ପିତଳ ତାଟିଅର ମାୟା ତ୍ୟାଗ କରିପାରେ ନାହିଁ, ସଂସାର ତ୍ୟାଗ କଅଣ ସହଜ କଥା ? ତୁମ୍ଭେ ତାହାର

ମାଅ, ତୁମ୍ଭର ଭାବନା କଅଣ ? ସାଧୁ ହେଲେ ହିଁ ସେ ତୁମ୍ଭମାନଙ୍କ ସେବା କରିବ ।

"ସାଧୁମାନେ ହେଲେ ଧଳା ଲୁଗା, ସଂସାରୀମାନେ ହେଲେ କଳା ଲୁଗା । କଳା ଲୁଗାରେ କାଳି ପଡ଼ିଲେ ମଧ୍ୟ ତେତେଟା ଜଣା ଯାଏ ନାହିଁ, କିନ୍ତୁ ଧଳା ଲୁଗାରେ ଗୋଟିଏ ବିନ୍ଦୁ ପଡ଼ିଲେହିଁ ସମସ୍ତଙ୍କ ଆଖିରେ ପଡ଼େ । ଦେହ ଧାରଣ କଲେହିଁ ବିପଦ । ସଂସାର ତ ଏହି କାମିନୀ କାଞ୍ଚନ ଘେନି ରହିଛି । ସାଧୁମାନଙ୍କୁ କେତେ ତ୍ୟାଗ କରି ଚଳିବାକୁ ହୁଏ । ସେଥିଲାଗି ଠାକୁରେ କହୁଥିଲେ, 'ସାଧୁ ସାବଧାନ' ।

"ସନ୍ନ୍ୟାସ ନେଲେ ବଡ଼ ଅଭିମାନ — ମୋତେ ପ୍ରଣାମ କଲ ନାହିଁ, ମାନ୍ୟ କଲ ନାହିଁ ଇତ୍ୟାଦି । ତାହାଠାରୁ ବରଂ ( ନିଜ ଧଳା ଲୁଗା ଦେଖାଇ ) ଏହାହିଁ ଭଲ ( ଅର୍ଥାତ୍ ଅନ୍ତରରୁ ତ୍ୟାଗ ) । ରୂପର ଅଭିମାନ, ଗୁଣର ଅଭିମାନ, ବିଦ୍ୟାର ଅଭିମାନ, ସାଧୁର ଅଭିମାନ କି ସହଜରେ ଯାଏ ? ସ୍ତ୍ରୀଅ ଯଦି ସନ୍ନ୍ୟାସିନୀ ହୁଏ, ସେ ତେବେ ସ୍ତ୍ରୀଅ ନୁହେ—ସେ ତ ପୁରୁଷ ।

(ସନ୍ନ୍ୟାସୀଙ୍କ ପ୍ରତି) "ତାହାଙ୍କୁ ବ୍ୟାକୁଳ ଭାବରେ ପ୍ରାର୍ଥନା କରିବ, ସବୁବେଳେ ସ୍ମରଣ ମନନ କରିବ । ବାବା, କାଠର ଯଦି ସ୍ତ୍ରୀ ଲୋକ ହୁଏ ତଥାପି ସେ ଆଡ଼କୁ ଚାହିଁବ ନାହିଁ କି ସେ ଆଡ଼କୁ ଯିବ ନାହିଁ । ସାଧୁର ସର୍ବଦା ସାବଧାନରେ ରହିବାକୁ ହୁଏ । ସାଧୁର ରାସ୍ତା ବଡ଼ ଖସଡ଼ା । ବାଟରେ ଚାଲିବାକୁ ହେଲେ ସବୁବେଳେ ଗୋଡ଼ ଟିପି ଟିପି ଚାଲିବାକୁ ହୁଏ । ସନ୍ନ୍ୟାସୀ ହେବା କଅଣ ମୁହଁର କଥା ? ଚାଲିବା ବେଳେ ଗୋଡ଼ର ବୁଢ଼ା ଅଗର

ଅତେବ ଲକ୍ଷ୍ୟ ରଖି ଚଳିବ । ସାଧୁଙ୍କର ସଦର ରାସ୍ତା ! କେହି ତାଙ୍କୁ ମାରିପାରନ୍ତି ନାହିଁ, ସମସ୍ତେ ତାହାଙ୍କୁ ବାଟ ଛାଡ଼ି ଦିଅନ୍ତି । ତାଠାରୁ ସ୍ତ୍ରୀ ମୂର୍ତ୍ତି—କୁଣ୍ଡେଇ ଯାଏ ବାଟରେ ଓଲଟି ପଡ଼ିଥାଏ ସନ୍ନ୍ୟାସୀ କେବେ ଗୋଡ଼ରେ ଘୁଞ୍ଚା ଓଲଟାଇ ଦେଖିବ ନାହିଁ । ସନ୍ନ୍ୟାସୀଙ୍କ ପାଖରେ ଅର୍ଥ ରହିବା ଅତ୍ୟନ୍ତ ଖରାପ । ଟଙ୍କ ( ଟଙ୍କା ) ଭର ନପାରେ ଏପରି କିଛି କଥା ନାହିଁ—ପ୍ରାଣ-ସଂଶୟ ପର୍ଯ୍ୟନ୍ତ ।

"ସାଧୁ ସନ୍ନ୍ୟାସୀ ବାହାଘରକୁ ଯିବେ କିପରି ? ଅନ୍ୟ ସମୟରେ ଯାଇପାରନ୍ତି ।

"ସାଧୁଙ୍କ ରାଗ ଦ୍ୱେଷ ରହିବା ଉଚିତ ନୁହେଁ । ସାଧୁ ସବୁ ସହ୍ୟ କରିବା ଆବଶ୍ୟକ । ହୃଦୟକୁ (ଠାକୁରଙ୍କ ଭଣଜା) ଠାକୁରେ କହିଥିଲେ, 'ତୁ ମୋ କଥା ସହିବୁ, ମୁଁ ତୋ କଥା ସହିବ, ତେବେ ସିନା ହେବ, ତାହା ନ ହେଲେ ଖାଜାଞ୍ଚିକୁ ଡାକିବାକୁ ହେବ ।'

"ତୁମ୍ଭେମାନେ ସନ୍ନ୍ୟାସୀ, ତୁମ୍ଭମାନଙ୍କର ଗୃହସ୍ଥଙ୍କ ସଙ୍ଗରେ ସମ୍ବନ୍ଧ ରଖିବା ଅତ୍ୟନ୍ତ ଖରାପ । ବିଷୟୀ ଲୋକଙ୍କ ପବନ ଲାଗିବା ମଧ୍ୟ ଖରାପ ।

"ଖାଇବା ପିଇବା ବିଷୟରେ ଲକ୍ଷ୍ୟ ରଖିବ । ମଠରେ ପୁଅମାନେ କେତେ କଷ୍ଟ କରନ୍ତି, ଖାଇବା ନାହିଁ ପିଇବା ନାହିଁ । ସେ ସବୁ ମୋତେ ଭଲ ଲାଗେ ନାହିଁ । ଯୋଗୀନ (ସ୍ୱାମୀ ଯୋଗାନନ୍ଦ ) କଠୋରତା କରି କରି ଶେଷରେ ଏତେ ରୋଗରେ ସଢ଼ି ସଢ଼ି ଅଳ୍ପ ବୟସରେ ଦେହ ଗଲା ।

"ଯା କିଛି ଖାଇବ ଭଗବାନଙ୍କୁ ନିବେଦନ କରି ଖାଇବ । ଅପ୍ରସାଦୀ ଅନ୍ନ ଖାଇବାର ନୁହେଁ । ଯେପରି ଅନ୍ନ ଖାଇବ ସେହିପରି ରକ୍ତ ହେବ । ଶୁଦ୍ଧ ଅନ୍ନ ଖାଇଲେ ଶୁଦ୍ଧ ରକ୍ତ ହୁଏ, ଶୁଦ୍ଧ ମନ ହୁଏ, ବଳ ହୁଏ । ଶୁଦ୍ଧ ମନରେ ଶୁଦ୍ଧା ଭକ୍ତି ହୁଏ, ପ୍ରେମ ହୁଏ ।

"ଏହି ଛକୋଟି ବିଷୟରେ ଖୁବ୍ ସାବଧାନରେ ଚଳିବ । ପ୍ରଥମ ନଈ କୂଳରେ ବାସସ୍ଥାନ, କେତେବେଳେ ଯେ ନଈ ବଢ଼ି ଭସାଇ ନେଇ ଯିବ ତା'ର ନିଶ୍ଚୟତା ନାହିଁ, ଦ୍ୱିତୀୟତଃ ସାପ; ଦେଖିଲେହିଁ ଖୁବ୍ ସାବଧାନରେ ରହିବ···କେତେବେଳେ ଯେ କାମୁଡ଼ି ଦେବ ତାହାର ଠିକ୍ ନାହିଁ । ତୃତୀୟତଃ ସାଧୁ; ସେମାନଙ୍କ କେଉଁ କଥାରେ କିମ୍ବା ମନର ଭାବରେ ଗୃହସ୍ଥଙ୍କ ଅମଙ୍ଗଳ ହୋଇ-ପାରେ ତାହା ତୁମ୍ଭେ ଜାଣି ପାରିବ ନାହିଁ, ସେମାନଙ୍କୁ ଦେଖିଲେ ଭକ୍ତି କରିବ, କୌଣସି କବାବ ଦେଇ ଅବଜ୍ଞା କରିବା ଉଚିତ ନୁହେଁ ।

## ତୀର୍ଥ ଓ ମୁକ୍ତି

"କାଶୀ ଚୈତନ୍ୟମୟ ସ୍ଥାନ । ଏଠାରେ ସବୁ ଜୀବ ଚୈତନ୍ୟମୟ, ପୋକ, ମାକଡ଼ ପର୍ଯ୍ୟନ୍ତ । ଭକ୍ତ ଅଭକ୍ତ ବିଧର୍ମୀ କୁଅନ୍ତୁ ପଛକେ ଯେଉଁମାନେ ଏଠାରେ ମରିବେ—କୀଟ ପତଙ୍ଗ ପର୍ଯ୍ୟନ୍ତ—ସେମାନଙ୍କର ମୁକ୍ତି ହେବ ।

"କେତେ ମହାପାପୀ କାଶୀକୁ ଅସୁଛନ୍ତି, ବାବା ବିଶ୍ୱନାଥଙ୍କୁ ସ୍ପର୍ଶ କରି ଉଦ୍ଧାର ପାଉଛନ୍ତି । ବାବା ଭୋଳାନାଥ ସମସ୍ତଙ୍କର ପାପ ନିର୍ବିକାର ଭାବରେ ଗ୍ରହଣ କରୁଛନ୍ତି ।

"ମଣିଷ ଯେଉଁ ରୋଗରେ ମରେ, ଯଦି ପ୍ରାୟଶ୍ଚିତ୍ତ ନ କରି ମରେ, ତେବେ ପର ଜନ୍ମରେ ସେହି ରୋଗ ନେଇ ଜନ୍ମ ହୁଏ ।

"ଜନ୍ମିତ ପୁରୁଷଙ୍କ ଛଡ଼ା ଅନ୍ୟ ସମସ୍ତଙ୍କୁ ବର୍ଷେ କାଳ ପ୍ରେତ ଯୋନିରେ ରହିବାକୁ ପଡେ । ତା ପରେ ଗୟାରେ ପିଣ୍ଡଦାନ, ମହୋତ୍ସବ ସେମାନଙ୍କ ଉଦ୍ଦେଶ୍ୟରେ କଲେ ସେମାନେ ପ୍ରେତ ଯୋନିରୁ ମୁକ୍ତ ହୋଇ ଭଗବାନଙ୍କ ନିକଟକୁ ଯାଆନ୍ତି ଅଥବା ଅନ୍ୟାନ୍ୟ ଲୋକରେ ସୁଖ ଭୋଗ କରନ୍ତି । ପୁନଶ୍ଚ ବାସନା ଅନୁସାରେ ଜନ୍ମ ହୁଏ । କାହାରି ବା ସେଠାରୁ ମୁକ୍ତି ମିଳେ । ତେବେ ଇହ ଜନ୍ମରେ କିଛି ସୁକୃତ ଥିଲେ ପ୍ରେତ ଦେହରେ ମଧ୍ୟ ଚୈତନ୍ୟ ହରାଏ ନାହିଁ । କେତେଦିନ ଯାଏ ବଂଶରେ କେହି ଭାଗ୍ୟବାନ ଜନ୍ମଗ୍ରହଣ କରି ଗୟାରେ ପିଣ୍ଡ ନଦିଏ କିମ୍ବା ଊର୍ଦ୍ଧ୍ୱଦେହର କିଛି ନକରେ ତେତେକାଳ ପ୍ରେତ ଦେହରେ ରହିବାକୁ ପଡେ । '

"ଯେ ମୃତ୍ୟୁ ପୂର୍ବରୁ ଅଜ୍ଞାନ ହୋଇ ଦେହତ୍ୟାଗ କରନ୍ତି, ଅଜ୍ଞାନ ହେବା ପୂର୍ବରୁ ଯେଉଁ ଜ୍ଞାନଟି ଥିଲା, ଯେଉଁ ଚିନ୍ତାଟି ନେଇ ଅଜ୍ଞାନ ହୋଇଛି, ସେହି ଚିନ୍ତା ଅନୁସାରେ ତାହାଙ୍କର ଗତି ହୁଏ ।

"ବାସନା ଥିବା ପର୍ଯ୍ୟନ୍ତ ଜୀବର ଯାତାୟାତ ଶେଷହୁଏ ନାହିଁ । ବାସନାଦ୍ୱାରା ଦେହରୁ ଦେହାନ୍ତର ହୁଏ । ଟିକିଏ ସନ୍ଦେଶ ଖାଇବା ବାସନା ଥିଲେ ମଧ୍ୟ ପୁନର୍ଜନ୍ମ ହୁଏ । ବାସନାଟି ସୂକ୍ଷ୍ମମଞ୍ଜି—ଯେପରି

ଟିକିଏ ବିଜ ମଞ୍ଜିରୁ ବିଶାଳ ବଟବୃକ୍ଷ ହୁଏ, ସେହିପରି । ବାସନା ଥିଲେହିଁ ପୁନର୍ଜନ୍ମ ହେବ । ଯେପରି ଗୋଟିଏ ଖୋଳରୁ ଅନ୍ୟ ଗୋଟିଏ ଖୋଳ । ସମ୍ପୂର୍ଣ୍ଣ ବାସନାଶୂନ୍ୟ ଜଣେ ଦୁଇଜଣ । ପୂର୍ବ ଜନ୍ମର ସୁକୃତ ଥିଲେ ଦେହାନ୍ତର ହେଲେ ମଧ୍ୟ ଚୈତନ୍ୟ ଲୋପ ପାଏ ନାହିଁ ।

"ଯେତେବେଳେ ରଥ ସମୟରେ ପୁରୀରେ ଜଗନ୍ନାଥ ଦର୍ଶନ କଲି, ସେତେବେଳେ ଅନନ୍ଦରେ ଭାବିଲି—ଭାବିଲି, ଅହା ଖୁବ ଭଲ, ଏତେ ଲୋକ ମୁକ୍ତ ହେବେ । ଶେଷରେ ଭାବିଲି ଯେ ତାହା ତ ନୁହେଁ । ଯେଉଁମାନେ ବାସନାଶୂନ୍ୟ, ସେହିମାନେହିଁ ମୁକ୍ତ ହେବେ । ସେ ଆଉ କେତେ ଜଣ ? ଜଣେ ଅଧେ ଛଡ଼ା । ଜୀବ ବାସନା ଓ କର୍ମ ଅନୁସାରେ ପୃଥିବୀରେ ଆସି ଜନ୍ମ ଲଭେ । ଏଠାରୁ କେହି ବା ମୁକ୍ତି ଲାଭ କରେ କେହି ବା ନୀଚ ଯୋନିକୁ ଯାଏ । ଚକ୍ର ପରି ସୃଷ୍ଟି ଚାଲୁଛି । ଯେଉଁ ଜନ୍ମରେ ବାସନାଶୂନ୍ୟ ହୁଏ ସେହି ତାହାର ଶେଷ ଜନ୍ମ ।

"ଯେଉଁମାନଙ୍କର ଶେଷ ଜନ୍ମ, ସେମାନଙ୍କ କର୍ମଗୁଡ଼ିକ ସେହି ଜନ୍ମରେ ଭୋଗ ହୋଇଯାଏ । ତୁମ୍ଭମାନଙ୍କର ଶେଷଜନ୍ମ ଯୋଗୁଁ ପୂର୍ବ ପୂର୍ବ ଜନ୍ମର କର୍ମଫଳ ଏହି ଜନ୍ମରେ ଭୋଗ ହୋଇ ଯାଉଛି ।

"ଏଠାକୁ ଯେଉଁମାନେ ଅସିଛନ୍ତି ଯେଉଁମାନେ ମୋର ପୁତ୍ର ସେମାନଙ୍କର ମୁକ୍ତି ହୋଇ ରହିଛି । ମୋର ପୁଅମାନଙ୍କୁ

ରସାତଳରେ ପକାଇବାକୁ ବାଧିବ ସାଧ୍ୟ ନାହିଁ । ମୋ ଉପରେ ଭାର ଦେଇ ନିଶ୍ଚିନ୍ତରେ ରହ । ଆଉ ଏତିକି ସବୁବେଳେ ସ୍ମରଣ ରଖିବ ଯେ ତୁମ୍ଭମାନଙ୍କ ପଛରେ ଏପରି ଜଣେ ଅଛନ୍ତି, ସମୟ ଆସିଲେ ତୁମ୍ଭମାନଙ୍କୁ ନିତ୍ୟ ଧାମକୁ ସେ ନେଇଯିବେ ।"

---

କଟକ କୃଷକ ପ୍ରେସରେ ପଣ୍ଡିତ ଶ୍ରୀ ଭୁବନେଶ୍ୱର ମିଶ୍ରଙ୍କ ଦ୍ୱାରା
ମୁଦ୍ରିତ—୧୯୫୨

## ଭୁବନେଶ୍ୱର
## ଶ୍ରୀ ରାମକୃଷ୍ଣ ମଠରୁ ପ୍ରକାଶିତ
## ପୁସ୍ତକାବଳୀ

| | |
|---|---|
| ଶ୍ରୀ ରାମକୃଷ୍ଣ ଲୀଳାମୃତ | ଟ୪୲ |
| ଶ୍ରୀ ରାମକୃଷ୍ଣ କଥାମୃତ | ଟ୮୲ |
| ଶ୍ରୀ ଶ୍ରୀ ରାମକୃଷ୍ଣ ଦେବଙ୍କ ବାଣୀ | ଟ୧୲ |
| ଶ୍ରୀ ରାମକୃଷ୍ଣ ଉପଦେଶ | ଟ୦। |
| ମହାପ୍ରଭୁ ଅଦ୍ୱୈତଦେବ | ଟ୦୩/ |
| ଗୀତାସାରାବଳୀ | ଟ୦। |
| ବୈଦିକ ଭାରତର ଗୁରୁ ଓ ବିଦ୍ୟାର୍ଥୀ | ଟ୧୩ |
| ସ୍ୱାମୀ ବିବେକାନନ୍ଦ | ଟ୦॥ |
| ବର୍ତ୍ତମାନ ଭାରତ | |

ଉପରୋକ୍ତ ପୁସ୍ତକାବଳୀ ଭୁବନେଶ୍ୱର ଶ୍ରୀ ରାମକୃଷ୍ଣ ମଠ ଏବ କଟକର ଟ୍ରେଡିଂ କୋମ୍ପାନୀ ଓ ଅନ୍ୟାନ୍ୟ ପୁସ୍ତକ ଦୋକାନରେ ମିଳେ।



